# ରାସ୍କେଲ୍ :

ଲେଖକ :
ରାଜକିଶୋର ପଟ୍ଟନାୟକ
ତେଲେଙ୍ଗା ବଜାର, କଟକ—୭୫୩୦୦୯

ପ୍ରକାଶକ
କେ. କେ ମିଶ୍ର ଏଣ୍ଡ କୋ :
ଝଣ୍ଟ୍‌ବନ୍ ଯାତ୍ର, କଟକ—୭୫୩୦୦୮

ପରିବେଷକ
ବୁକ୍ସ ଇଣ୍ଟରନାସ୍‌ନାଲ
ବାଙ୍କାବଜାର, କଟକ—୭୫୩୦୦୨

ମୁଦ୍ରକ :
ହୀରାମଣି ପ୍ରେସ୍
ଅଲିଶା ବଜାର, କଟକ—୭୫୩୦୦୨

ପ୍ରଥମ ପ୍ରକାଶ :
ସ୍ନାନ ପୂର୍ଣ୍ଣିମା, ୧୯୮୩

ମୂଲ୍ୟ—ପନ୍ଦର ଟଙ୍କା

**RASCAL**

*Written by* :
**Rajkishor Patnaik**

*Published by* :
**K K Mishra & Co**
Banka Bazar, Cuttack-753002

*Printed at*
**Hiramani Press**
Cuttack-753002

First Edition **1983**

**Price-Rupees Fifteen only**

http://oaob.nitrkl.ac.in

ପୁସ୍ତକର ନାୟକ ମୋର ପ୍ରିୟ ରାସକେଲ୍‌କୁ ଏଇ ବହିଟି ଦେଲି

ରାଜକିଶୋର ପଟନାୟକ

ତା ୨୩ । ୬ । ୮୩

http://oaob.nitrkl.ac.in

# ଲେଖକ ପରିଚିତି

ରାଜକିଶୋର ପଟ୍ଟନାୟକ, ତେଲେଙ୍ଗା ବଜାର, କଟକ-୯

| | | |
|---|---|---|
| ୬।୮।୪।୧୯୧୭ | ... | ଜନ୍ମ—କଲିକତା । |
| ୧୯୩୬ | ... | ବି. ଏସ୍‌ସି. |
| ୧୯୪୦ | ... | ଓକିଲ |
| ୧୯୪୧—୪୩ | ... | ଏଲ୍. ଏଲ୍. ଏମ୍. ପାଠ୍ୟକ୍ରମ |
| ୧୯୪୭—୫୨ | ... | ଆଇନ କଲେଜ ଅଧ୍ୟାପନା |
| ୧୯୪୮ | ... | ବିରୋଧି ଦଳ ପକ୍ଷରୁ ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ପଦ ପାଇଁ ପ୍ରତିଯୋଗୀ |
| ୧୯୪୯—୫୨ | ... | ଲିଖିତ ପୁସ୍ତକ ମାଟ୍ରିକୁଲେସନରେ ଓଡ଼ିଆ ଅତିରିକ୍ତ ପାଠ୍ୟ ରୂପେ ନିର୍ବାଚିତ |
| ୧୯୫୨—୫୬ | ... | ଆଇ. ଏ. ରେ ଓଡ଼ିଆ ଅତିରିକ୍ତ ପାଠ୍ୟ ରୂପେ ବିଭିନ୍ନ ପୁସ୍ତକ ନିର୍ବାଚିତ |
| ୧୯୫୨ | ... | ସୁଦାନରେ ଗ୍ରୀକଣ ସୁପାରିଶ୍ |
| ୧୯୪୫—୬୫ | ... | ଇଂରାଜି ପାକ୍ଷିକ, ସାପ୍ତାହିକ, ମାସିକ, ଓଡ଼ିଆ ପାକ୍ଷିକ ଓ ଦୈନିକ ଆଦିର ସମ୍ପାଦନା |
| ୧୯୬୪ | ... | ବିରୋଧଦଳ ପକ୍ଷରୁ ରାଜ୍ୟସଭାକୁ ପ୍ରତିଯୋଗିତା |
| ୧୯୬୧ | ... | ଭାରତ ସରକାରଙ୍କ ଗ୍ରୀକଶ ସୁପାରିଶ୍ । |
| ୧୯୬୯ | ... | ଓଡ଼ିଶା ହାଇକୋର୍ଟ ପାଇଁ ମନୋନୟନ |
| ସ୍ରଷ୍ଟ ସାହିତ୍ୟର ମୂଲ୍ୟାୟନ | | ଅଦ୍ୟାବଧି ଅସ୍ପଷ୍ଟ । |



http://oaob.nitrkl.ac.in

"ସପଟକେଲ୍" ବହିର ଲେଖକର ପ୍ରଥମ ମୁଦ୍ରଣ ବାବଦ ସମୁଦାୟ ରୟାଲଟି ଦୁଇହଜାର ଟଙ୍କା ପ୍ରକାଶକଙ୍କଠାରୁ ଗ୍ରହଣ କଲି ।

ରାଜକିଶୋର ପଟନାୟକ
୨୩-୭-୮୩

ଏହି ପୁସ୍ତକର ସମସ୍ତ ରୟାଲଟି ନିଖିଳ ଉତ୍କଳ ପ୍ରକାଶକ ଓ ପୁସ୍ତକ ଶିଳ୍ପୀ ସଂଘ ବାଙ୍କା ବଜାର, କଟକକୁ ଶ୍ରଦ୍ଧା ସ୍ୱରୂପ ଦାନ ଦେଲି ।

ରାଜକିଶୋର ପଟନାୟକ
୨୩-୭-୮୩

http://oaob.nitrkl.ac.in

# ଲେଖକର ଆତ୍ମଲିପି

ଏଇ ବହିଟି ଅନେକ ଅସ୍ୱାଭାବିକ ପରିସ୍ଥିତିରେ ଅପ୍ରେଲ ଓ ମେ ୧୯୮୩ରେ **ବୁକସ୍ ଇଣ୍ଟରନାସନାଲ,** ବାଙ୍କା ବଜାର, କଟକ-୨ ଦୋକାନରେ ଲେଖା ଯାଇଛି । ଏହା ମୋର ଲେଖା ନୁହେଁ । ଅନ୍ୟ ଶକ୍ତି ଏହାକୁ ଲେଖାଇଛି । ତେଣୁ ଏଇ ବହିଟିର ପ୍ରତିଦ୍ୱନ୍ଦ୍ୱୀ ଶୀଘ୍ର ଦେଖା ଦେବା ସମ୍ଭବ ନୁହେଁ ।

ରାସକେଲ୍‌ର ମାଆ ମାଡାମ୍ ନାର୍ଣ୍ଣି ବହିରେ ସମଧର୍ମୀ ଭାବ ଆତ୍ମପ୍ରକାଶ କରି ଏଇ ବହିର ପରିପୂରକ ରୂପେ ନିକଟରେ ଦେଖା ଦେବ ।

ଏଇ ପ୍ରକାରର ବହି ପ୍ରକାଶ କରିବାର ସାହିତ୍ୟିକ ସାହସ ଓଡ଼ିଶାର ଅନ୍ୟ ପ୍ରକାଶକର ନାହିଁ । କାରଣ ଏଠାରେ ସାହିତ୍ୟ ପ୍ରକାଶ ହେଉଛି ସାହିତ୍ୟ ବ୍ୟବସାୟର ଅନ୍ୟନାମ ।

**ରାଜକିଶୋର ପଟନାୟକ**

୨୩-୬-୮୩

http://oaob.nitrkl.ac.in

ଭସ୍ମାମେଘ (ପୁନ ମୁଦ୍ରଣ), ଚଲାବାଟ (ପୁନ ମୁଦ୍ରଣ), ଅଷ୍ଟମୀ ଚନ୍ଦ୍ର (ପୁନ ମୁଦ୍ରଣ), ହାଟ ବାହୁଡ଼ା (ଦ୍ୱିତୀୟ ମୁଦ୍ରଣ) ଓଡ଼ିଶା ବୁକ୍ ଷ୍ଟୋର କଟକ-୨ଙ୍କର ପ୍ରକାଶିତ ତାଲିକାରେ ଥିଲା । ଏହାର ପରବର୍ତ୍ତୀ ମୁଦ୍ରଣ ୧୯୮୪ରେ ନିଜେ ପ୍ରକାଶ କରୁଛି ।

ଯଦି ଚଳନ୍ତି ବନ୍ୟା, ବାତ୍ୟା ବହି କିଣା ନ ହୁଏ, ତାହାହେଲେ ଏଇ ମୁଦ୍ରଣ ୧୯୮୫ରେ କରାଇବ ।

ରାଜକିଶୋର ପଟ୍ଟନାୟକ

୨୩-୭-୮୩

http://oaob.nitrkl.ac.in

# ରାସକେଲର ଜୀବନଗାଥା

ଇଏ ରାସକେଲର କଥା । ରାସକେଲ ହେଲା ବିଦେଶୀ ସାହେବଙ୍କର ଗୋଟିଏ ଦରକାରୀ ଶବ୍ଦ—ଏବେ ଆସି ଆମ ଭାରତଭୂମିର ଓଡ଼ିଆ—ଖଣ୍ଡରେ ପୋଷା ମାନି ଗଲାଣି । କେହି କାହାକୁ ପାଜି ନ କହି 'ରାସକେଲ' କହୁଛି ।

ଇଏ ହେଉଛି ସେହି ରାସକେଲ କଥା—ତମର ରାସକେଲ ନୁହେଁ । ଆମର ରାସକେଲ୍ । ସେ ଆମର କୁକୁର ।'

ତାକୁ ନାଁ ଦେଇଥିଲେ ଜଣେ ରାଜାପୁଅ । ସେମାନଙ୍କର ଉଆସରେ ବହୁତ କୁକୁର ରହନ୍ତି । ତେଣୁ ନାଁ ଖୋଜି ନ ପାଇଲେ ସେମିତି କୁକୁର—ସବୁକ ମାଲିକଙ୍କର ସାହାଯ୍ୟ ନିଆଯିବା ଦରକାର । ସେଇ କହିଥିଲେ ତା'କୁ ରାସକେଲ୍ ନାଁ ଦିଅ ।

ସମସ୍ତଙ୍କ ମନକୁ ପାଇଥିଲା । କୁକୁର—ଛୁଆ ହୋଇଗଲା—ରାସମକେଲ୍ । ଦି' ଦିନ ପରେ ରାସକେଲ୍—ରାସକେଲ୍ ଡାକିଲେ ସେ ଲାଙ୍ଗୁଡ଼ ହଲାଏ । ତେବେ ବହୁତ ହଲାଏ ନାହିଁ । କାରଣ ରାସକେଲର ନିଜ ବିଷୟରେ ମାନ ଅପମାନର ଜ୍ଞାନ ଅଛି ।

ରାସକେଲ୍ ରଙ୍ଗ ଗୋରା—ଧଳା ନୁହେଁ । ଫିକା ନାଲି । ତେଣୁ କୁକୁର ଛୁଆଙ୍କର ସାତଟିର ମେଳା ଭିତରେ ଚିହ୍ନିବାକୁ ତାହାର ସେଇ ଗୋରା ଚେହେରା କମରେ ଲାଗେ ।

ବି. ଏ, ଏମ୍. ଏ. ପାସ ଅବା ନାଚଗାନ ଅବା ଏମ୍. ଏଲ୍. ଏ—ଏମ୍. ପି ଲାଗିଲେ ଯେମିତି ମଣିଷକୁ ମଣିଷଠାରୁ ଅଲଗା ବାରି ହୁଏ ସେମିତି ଗୋରା ରାସକେଲ ହେଲା କୁକୁରକୁ ବାରି ହେବାର ଗୋଟିଏ ଶ୍ରେଷ୍ଠ ଉପାୟ ।

ନାଁକୁ ନେଇ ଲୋକର ଆଚରଣ ବଦଳେ । ଆଚରଣ ନେଇ ଲୋକକୁ ମଧ୍ୟ ନାଁ ମିଳିଯାଏ । ସେମିତି କୁକୁର ଛୁଆଟିକୁ ରାସକେଲ୍ ନାଁ ମିଳିଥିଲା ।

http://oaob.nitrkl.ac.in

ସେ ବାହାରର କୁକୁର । ତାହାର ମା' ଥିଲା ସାଙ୍ଗା ଦାଣ୍ଡର କୁକୁର । ତାହାର କେହି ମାଲିକ ନ ଥିଲେ ଓ ସେ ମଧ୍ୟ କାହାର ନଜରରେ ନୁହେଁ ।

ସେ ପବ୍ଲିକ୍‌ର କୁକୁର । ତାହାକୁ ମୁନସିପାଲିଟିର କୁକୁର ମରା ବାହିନୀ ଚର୍ଣ୍ଣିବାକୁ ଚେଷ୍ଟା କରୁଥାନ୍ତି । ସେ ମଧ୍ୟ କେଉଁଠି ଗୋଟାଏ ଠାକ ଯିବା ପାଇଁ ଚେଷ୍ଟା କରି ସେ ତିନି ବର୍ଷରୁ ଅଧିକ ହେଲାଣି ବ୍ୟର୍ଥ ହେଉଛି ।

ତେଣୁ ଗ୍ରେସକେଲର ମା' ହେଉଛି ବେକାର । ତମ ଆମ ପରି ପୁଅ ଯେମିତି ବେକାର ହେଉଥିଲା । ଏବେ ଝିଅ ବି ବେକାର ହେଉଛନ୍ତି । କାରଣ କେତେବେଳେ ତାକୁ ଗୃହକର ଜୁଟି ନାହିଁ ଅବା କେତେବେଳେ ତାକୁ ବର ଯୁଟି ନାହିଁ ।

ଇଏ ହେଲା ଗ୍ରେସକେଲର ଇତିବୃତ୍ତ । ସେ ବେକାରର ପିଲା ।

କିନ୍ତୁ ସେ ଥାଇତା ହୋଇ ଯାଇଛି । ଯେଉଁ ଘରେ ମା' ସୁବିଧା ପାଇ ନ ଥିଲା ସେଠି ପୁଅ ସୁବିଧା ପାଇଗଲା ।

ତାକୁ ଗୋଟାଏ ଲୁହା ଜଞ୍ଜିର ମିଳି ଯାଇଛି । ଗ୍ରେସକେଲ୍ ସେଥିରେ ବନ୍ଧା ହେଲା ।

ଗ୍ରେସକେଲ୍‌ର ମାଲିକର ଗୋଟାଏ ଗାଈ ବନ୍ଧା ହେଉଥିଲା । ସେଇ ଗାଈ ମରିଗଲା ପରେ ଘରର ଗୋଟାଏ ଦରକାରି ଜିନିଷ ହିସାବରେ ଆଗତ ଦିନ ପାଇଁ ଜଞ୍ଜିରଟି ପଡ଼ି ରହି କଳଙ୍କି ଖାଉଥିଲା ।

ଗ୍ରେକେଲ ମିଳିଯିବାରୁ ଖର୍ଚ୍ଚ କାଟ ପାଇଁ ସେଇ କଳଙ୍କିଖିଆ ଜଞ୍ଜିର ଖୋଜା ହୋଇ ବାହାରିଲା—ଗ୍ରେସକେଲ୍‌ର ଗଳା ମଣ୍ଡନ କରିବା ପାଇଁ ।

ଘରର ଫୋପଡ଼ା ହେବା ଖାଇବା ଜିନିଷକୁ ଯେମିତି ମରାମତି କରି ଘର ଓ ବାହାରର ଲୋକଙ୍କୁ ଦେଇ ଭୋଗ କରାଯାଏ ସେମିତି ଜଞ୍ଜିରଟି ଉପଯୋଗ କରି ଗ୍ରେସକେଲକୁ ରଖା ହେଲା ।

ଜଞ୍ଜିର ପାଇଁ ଖୁଣ୍ଟ ନାହିଁ ଭାରି ଜଞ୍ଜିରକୁ କାମରେ ଲଗାଇବାପାଇଁ ଜଞ୍ଜିରରେ ଝୋଟବାଣୀ ବନ୍ଧା ହୋଇ ଲମ୍ବା କରା ହୋଇଥିଲା ତାହାଲେ ଗ୍ରେସକେଲ୍‌ର ବେକକୁ ଭାରି ଲାଗିବ ନାହିଁ ।

ତେବେ ବି ଦେଖିଲା ଲୋକ ଗ୍ରେସକେଲ୍ ପ୍ରତି ସହାନୁଭୂତି ଦେଖାଇ ମାଲିକକୁ ଗାଳି ଦିଅନ୍ତି ।

http://oaob.nitrkl.ac.in

ଏତେ ଶ୍ରେଷ୍ଠ କୁଆଁଟାଏ—ସବୁଆ ଚେନ୍‌ରେ ବାନ୍ଧିବା ଦରକାର ।

ଏମିତ ସର୍ବସାଧାରଣରୁ ଆପତ୍ତି ଅଭିଯୋଗ ହେଲେ ଗ୍ରେସକେଲକୁ ଖୋଲ ଦିଆଯାଏ । କାରଣ ଲୋକମତକୁ ମାନ୍ୟ ଦିଆଗଲା ଓ ଗ୍ରେସକେଲର ବେକକୁ ଉଶ୍ୱାସ କର ଦିଆ ହେଲା ।

ସେତେବେଳ ଯାଏ ଗ୍ରେସକେଲ୍ ତାହାର ବିଛଣାରେ ଶୋଇ ରହିଥାଏ । ତାହାର ବିଛଣା ହେଲା ଗୋଟାଏ ପୁରୁଣା କୁଣ୍ଡା ଅଖା—ସେଇଟା ନଥିଲେ ଗ୍ରେସକେଲ୍‌କୁ ଭଲ ଲାଗେ ନାହିଁ । ତେଣୁ ସେ ଆଖି ବୁଜେ ନାହିଁ । ଯାଚି କରୁଥାଏ ।

ଗ୍ରେସକେଲ୍ ହେଲା ତମ ଆମ ପର ଗୋଟିଏ ପ୍ରାଣୀ । ତାହାର ସମସ୍ୟା ଯାହା, ଆମର ସମସ୍ୟା ବି ସେଇଆ ।

ଦ୍ୱିତୀୟ ଶ୍ରେଣୀରୁ ଆରମ୍ଭ କରି ଏମ୍. ଏ ପର୍ଯ୍ୟନ୍ତ ସମସ୍ତଙ୍କୁ ପାଠ ଭିଡ଼ ଲାଗୁଛି । ପିଅନ କିରାନିରୁ ଆରମ୍ଭ କରି ଅଫିସର ପର୍ଯ୍ୟନ୍ତ ସବୁବେଳେ କାମ ଓ ଭବିଷ୍ୟତ ଅନିଶ୍ଚିତ ରହୁଛି । ଅନ୍ୟର ସୁପାରିସ ଓ ସହାନୁଭୂତିରେ ଜୀବନ ଗଢ଼ା ହେଉଛି ।

ଗ୍ରେସକେଲ୍‌ର ଜର୍ଣ୍ଣିର ଓ ତାହାର ମାଲିକର ଜର୍ଣ୍ଣିର ଏକା ଲକ୍ଷଣ—ଏକା ଗୁଣ । ସମସ୍ତେ ନିଜର ଅବସ୍ଥାରେ କ୍ଳାନ୍ତ ଓ ଅସନ୍ତୁଷ୍ଟ । ସମସ୍ତେ ଫିଟି ପଳାଇବାକୁ ଚାହାନ୍ତି । ସମସ୍ତଙ୍କର ସୁଖ ଦୁଃଖ ସମାନ ।

ଗ୍ରେସକେଲ୍ ଫିଟିଗଲେ କିଛି ବେଳ ଛଟା ଗାଳ ତାହାର ଅଖା ଖଣ୍ଡିକରେ ପଡ଼ି ରହେ । ସେମିତି ଆଖିବୁଜି ସବୁ ମାଲିକର ଲୋକଙ୍କର ମନଯୋଗ ଓ ତଦାରଖକୁ ଦେଖୁଥାଏ ।

ହଠାତ୍ ଜଣାପଡ଼େ ଗ୍ରେସକେଲ ନାହିଁ । ସେ ଖସି ଗଲାଣି ।

ତାକୁ ଧରିବାକୁ ଧାଇଁବାକୁ ପଡ଼େ । କାରଣ ସେ ଆମର ପୋଷାକୁକୁର । ପୋଷା ମାଇ ଯେମିତି ଘରେ ରହିଥିବ ପୋଷା କୁକୁର ବି ସେମିତି ଆଖି ଆଗେ ଆଗେ ରହିବା କଥା ।

ଏଇ ନିୟମକୁ କୁହାଯାଏ ଶାସନ । ଏଇ ଶାସନ ବିରୁଦ୍ଧରେ ସବୁଠାରେ ବିଦ୍ରୋହ । ଏଇ ବିଦ୍ରୋହର ନାଁ ହେଲା ଦେଶ ସେବା ।

http://oaob.nitrkl.ac.in

ରାସକେଲ୍ ତାହାର ଜଞ୍ଜିର ବିରୁଦ୍ଧରେ ବିଦ୍ରୋହ କରି ଘରର ଦୁଆର, କାନ୍ଥକୁ ତୁଚ୍ଛ କରି ଦେଇ ରାସ୍ତାରେ ପାଦ ପକାଇଲା ପରେ ତାହାର ଶ୍ରେଷ୍ଠ ଦେହରେ ସ୍ୱାଧୀନତାର ବଳ ଆସେ । ସେ ଚାଲେ ଘରଠାରୁ ଦୂରକୁ—ଅଳ୍ପ ଦୂରରୁ ଅଧିକ ଦୂରକୁ ।

ପଛରେ ଚାଲନ୍ତି ଘର ଲୋକ—ଚୋର ପଛରେ ପୁଲିସ ଧାଇଁଲା ପରି । ରାସ୍ତା, ମଟର କଟାଇ ରାସକେଲ୍ ଚାଲିଥାଏ ଆଗକୁ । ସେ ସ୍ୱାଧୀନତା ପାଇଯାଇଛି । ପଛରୁ ପୁଲିସ ଚୋରକୁ ଡାକିଲା ପରି ପରାଧୀନତାର ଜଞ୍ଜିର ଡାକ ଛାଡ଼ୁଛି ।

ଚୋରକୁ ପୁଲିସ କାବୁ କରିବା ଯେତିକି ଦୁରୂହ, ରାସକେଲ୍‌କୁ ଧରିବା ସେତିକି ଦୁସାଧ୍ୟ ।

ରାସକେଲ୍ ହଜିଯାଏ ଘଣ୍ଟାଏ ଦି' ଘଣ୍ଟା—ଘରୁ ଝିଅ ହଜିଗଲା ପରି । ଚାରିଆଡ଼େ ଦୁଃଖ ଓ ଆଶଙ୍କା ଯେ ରାସକେଲ୍ ପଳାଇଲା । ଝିଅକୁ କବାଟର ଆକଟ ଜାରି କଲା ପରି ସମସ୍ତଙ୍କର ପ୍ରତିଜ୍ଞା ଯେ ରାସକେଲ୍ ଧରାପଡ଼ିଲେ ଅଉ ଫିଟା ଯିବ ନାହିଁ ।

ଶେଷକୁ ରାସକେଲ୍ ଚାଲିଆସେ ଘରକୁ । ଯାଇଥାଏ ସଦର ଦୁଆରବାଟେ କିନ୍ତୁ ଫେରିଆସେ ବାରି ପାଚେରି ପାଖକୁ ।

ବାରି ପାଚେରି ଦି ହାତ ଉଚା । ସେଥିରେ ଥିବା ପାଣି ନଳା ଛଅ ଆଙ୍ଗୁଳି ଡ୍ୟାମିଟର କଣା । ରାସକେଲ୍ ନଳା ଭିତରେ ଗଳିବାକୁ ଚାହେଁ ନାହିଁ । ଆଉ ପାଚେରି ଡେଇଁ ପାରେ ନାହିଁ ।

ସେ ସେଇଠି ରହି କାନ୍ଦେ - କୁଁ କୁଁ ହୁଏ । ସେଇ କାନ୍ଦଣା ଶୁଭେ ପାଖ ରୋଷେଇ ଘରକୁ ।

—ଆ, ରାସକେଲ୍ ।

ରାସକେଲ ହାତେ ଦୂଇଁଯାଏ ପାଚେରି ପାଖରୁ । ସେ ଧରା ଦେବ ନାହିଁ ତାକୁ ମାରିବେ ।

ଶାସ୍ତିର ଭୟ ନ ହେବ କାହାର ? ଶାସ୍ତି କେଉଁଠି କାହାକୁ କେତେବେଳେ ଅବା ମିଠା ଲାଗିଛି ଯେ ଆଦର କରି ଶାସ୍ତି ପାଖକୁ ଯାଇ ଥିବ ?

ରାସକେଲ୍ ଖୁସାମଦ ପାଏ ପାଟକୁ ଚାଲି ଆସିବା ପାଇଁ—ରାସକେଲ୍ ଥରକୁ ଥର ଚାହେଁ । କିନ୍ତୁ ପାଟକୁ ଆସେ ନାହିଁ ଅବା ଦୂରକୁ ଘୁଞ୍ଚେ ନାହିଁ ।

http://oaob.nitrkl.ac.in

ଧରା ଦେବାକୁ ଆସିଛୁ । କିନ୍ତୁ ଧରା ଦେଉ ନାହିଁ । ଇଏତ ଆମର ମଣିଷ ସମାଜର କଥା । ସମସ୍ତେ ସମସ୍ତଙ୍କୁ ଧରା ଦେବାକୁ ଖୋଜୁ କିନ୍ତୁ ଧରା ଦେଉ ନାହିଁ । ଭଗବାନ ବି ଆମକୁ ଧରା ଦେବାକୁ ଇଙ୍ଗିତ ଦେଇ ଧରା ନ ଦେଇ ରହିଥାନ୍ତି— ନୁହେଁ ପାଖ, ନୁହେଁ ଦୂର—ଜାଗାରେ ।

— ଆ, ଆ, ରାସକେଲ୍—

ରାସକେଲ ପୁଚ୍ଛ ଆଡେ଼ ପାଚେରୀ ପାଟକୁ—ଡାକୁଥିବା ଲୋକର ହାତ ପାଟକୁ । ସ୍ୱରର କଠୋରତାରୁ ସେ ବାରିନିଏ ତାକୁ ଦଣ୍ଡ ନା କ୍ଷମା କ'ଣ ମିଳିବାର ଅଛି ?

ଧରା ଦେଇ ରାସକେଲ୍ ପାଚେରୀ ତଳୁ ଭିତରକୁ ଆସେ । ତାହାର ଅଉ ଦୋଷ ନାହିଁ । ଭିତରକୁ ଆସି ଧାଇଁ ଚାଲିଯାଏ ତାହାର ସେଇ ଅଖା ବିଛଣା ପାଖକୁ ।

ଯା'କୁ କହୁଥାଉଁ ଜୀବନ । ସଂସାରର ତୁଚ୍ଛ ପଦାର୍ଥକୁ ଭଲପାଇ ବାରମ୍ବାର ଆଦର ନିବା ହେଉଛି ପ୍ରାଣୀର ଧର୍ମ—କୁକୁର ରାସକେଲ୍ ଯାହା, ଆମେ ମଣିଷ ବି ସେଇଆ ।

ମଣିଷ ହେଉଛି କୁକୁର । କିନ୍ତୁ ମଣିଷର ନାହିଁ କୁକୁରର ମାଲିକ ପ୍ରତି ଥିବା ସ୍ନେହ, ଭକ୍ତି ଓ କୃତଜ୍ଞତା ।

ତେଣୁ ରାସକେଲ୍ ମଣିଷଠାରୁ ବଡ ଓ ଉଚ୍ଚ ।

କିନ୍ତୁ ସମସ୍ତ ଶୋଇଲା ପରେ ରାସକେଲ୍ ବୁଲାବୁଲି ଆରମ୍ଭ କରିଦିଏ ।

ଘରେ ବନ୍ଧା ହେବା, ଘରେ ରହିବା, ଘରୁ ପଳାଇ ଯିବା, ଘରକୁ ଫେରି ଆସିବା, ଘରୁ ଗଲା ପରେ ଗାଳି ଖାଇବା, ଘରକୁ ଫେରିଲା ପରେ ଆଦର ପାଇବା, କୁକୁର ଓ ମାଲିକ ଦୁହେଁ ପରସ୍ପର ଦୋଷକୁ ଭୁଲି ପରସ୍ପରକୁ ଭଲ ପାଇବା ଏକାପରି ଏକାବେଳେକେ ସତ ।

ରାସକେଲ୍ ଅଇଁସା ପାଏ । ଗେଲ ହୁଏ । ଦେହକୁ ଚାଟେ । ଦେହ ଉପରେ ଚଢେ଼ । ଆଦର ନ କଲେ ଖାଏ ନାହିଁ । ଭାତ ବଦଳରେ ଦୁଧ ଖୋଜେ । ବଡ଼ ପାମ୍ପଡକୁ ଖୋଜିଲା ପରି ସେ ମଧ୍ୟ ବିସ୍କୁଟ ଖୋଜେ । କୁକୁର ହେଲେ ବି ତାହାର ମଧ୍ୟ ନିର୍ବାଚନ, ପସନ୍ଦ, ମନୋନୟନ ସବୁ ରହିଛି ।

http://oaob.nitrkl.ac.in

ଗ୍ରେସ୍‌କେଲ୍ ଓ ମଣିଷ ସମାଜ ।

ଯିଏ ଯେଉଁଠି ରହୁଛି ସେଇ ଜାଗା ହେଉଛି ତାହାର ପାଇଁ ଇନ୍ଦ୍ରଭୁବନ । ପାଖରେ ଯେଉଁ ଲୋକ ମିଳେ ସେଇ ହେଉଛି ଈଶ୍ୱରଙ୍କର ଅସୀମ ଆଶୀର୍ବାଦ । ସେଇ ଛୋଟ ପରିସରର ମାୟା ହେଉଛି ସଂସାର ।

ବିଶ୍ୱବ୍ରହ୍ମାଣ୍ଡର ଅସୁମାରି ଲୋକ, ଅସୁମାରି ପରିସ୍ଥିତି ହେଉଛି ଏଇ ସଂସାର ତତ୍ତ୍ୱ ବୁଝିବା ପାଇଁ ଗୋଟିଏ ଗୋଟିଏ ଅନୁଶୀଳନୀ । ଗଣିତର ଏକ ସୁନ୍ଦର ସମସ୍ୟା ପାଇଁ ପାଞ୍ଚ, ପଚିଶ, ପଞ୍ଚଶହ, ପାଞ୍ଚ ହଜାର ଅନୁଶୀଳନୀର ମାଳା ।

କୁକୁର ଗ୍ରେସ୍‌କେଲ୍ ଓ କୁକୁର ମାଲିକର ଯେଉଁ ସମ୍ବନ୍ଧ—ମାଲିକର ନିଜ ସ୍ତ୍ରୀ, ନିଜ ଝିଅ, ନିଜ ପୁଅଙ୍କ ସହିତ ସେଇ ସମ୍ପର୍କ ।

ଫରକ ହେଲା ସେ ଗ୍ରେସ୍‌କେଲ୍ ଥରେ ପୋଷା ମାନିଲେ ବାରମ୍ବାର ଫେରିବ, ବାରମ୍ବାର ଆପଣାର ହେବ । ଥରକୁ ଥର ନିଜର ହେବ । ଶେଷକୁ ମାଲିକ ପାଇଁ ଜୀବନ ଦେବ କିନ୍ତୁ ମଣିଷ ସେତିକି କରିପାରିବ ନାହିଁ । ସେ ଯେତେବେଶି ସେବାଯତ୍ନର ପରିମାଣ ପାଇବ ସେତିକି ଦୂରକୁ ଚାଲିଯିବ ।

ଗ୍ରେସ୍‌କେଲ୍ ତାହାର ପ୍ରତିଭା ଦେଖାଇବାରେ ଲାଗିଲାଣି । ଉପକରଣ ଖୁବ୍ କମ୍ ଦୁଇଟି ଆଖି, ଗୋଟିଏ ଲାଙ୍ଗୁଡ଼, ଗୋଟିଏ ଜିଭ ଓ ଦୁଇଟି ଆଗ ଗୋଡ଼ ।

ଏତିକିରେ ସେ ମଣିଷର ହୃଦୟକୁ ଜୟ କରିପାରିବ । ସେଇ କଥା ସେ ତାହାର ଜନ୍ମରୁ ରକ୍ତରେ ଆଣି ଏଇ ମାଟିକୁ ଆସିଥିଲା । ସେଇ ମନ୍ତ୍ରି ତାହାର ଗଛ ଦେଖାଇଲାଣି ।

ବାହାରୁ ଘର ଭିତରକୁ ଆସିଲେ ଗ୍ରେସ୍‌କେଲ୍ ତାହାର କଅଁଳିଆ ଗଳାରେ ଗୋଟାଏ ପ୍ରକାରର ଶବ୍ଦ କରି ପଛେ ପଛେ ଚାଲି ଆସେ ଆଦର କରିବା ପାଇଁ ।

ସେ ହୁଏତ ବୁଝିପାରେ ଯେ ସଂସାରରେ ଜଣେ ହେବା ପାଇଁ ପରକୁ ଆପଣାର କରିବାର ଏକମାତ୍ର ଉପାୟ ହେଉଛି ମନଖୋଲା ଆଦର ।

ଯିଏ ଏତିକି ପାଏ ସେ ନିଜର କୃତଜ୍ଞତା ଜଣାଇବା ପାଇଁ ଗ୍ରେସ୍‌କେଲ୍‌କୁ ଟେକିନିଏ । ସେ ତେଲ ହୁଏ ଓ ସୁବିଧା ପାଇଲେ ମୁହଁକୁ ଚାଟିଦିଏ ।

http://oaob.nitrkl.ac.in

କାହିଁ ଏଇ ସଂସାରର ସ୍ୱାସ୍ଥ୍ୟରକ୍ଷା ? ଯେଉଁମାନେ ସ୍ୱାସ୍ଥ୍ୟ ଥାଉ କି ନ ଥାଉ ସ୍ୱାସ୍ଥ୍ୟରକ୍ଷାର ନିୟମ ପାଳିବାରେ ଅହରହ ବ୍ୟସ୍ତ ଓ ସ୍ୱାସ୍ଥ୍ୟରକ୍ଷାର ସମସ୍ତ ଶ୍ରେଷ୍ଠବଡ଼ ନିୟମ ମୁଖସ୍ଥ କରି ରଖିଛନ୍ତି ସେଇ ଲୋକେ ନିଜର ପୋଷା କୁକୁର ବିଲେଇ ପାଖରେ ଏଇ ନିୟମକୁ ପାଳିପାରନ୍ତି ନାହିଁ ।

ନିଜର ପ୍ରିୟଜନ ଓ ପାଳିତ ପ୍ରାଣୀ ପାଖରେ ସ୍ୱାସ୍ଥ୍ୟରକ୍ଷାର ନିୟମ ଯେମିତି ବାତିଲ୍ ଠିକ୍ ସେମିତି ଆମର ନିଜର ଚଳଣିର ନିୟମ ମଧ୍ୟ ଅକାମି ।

ରାସକେଲ୍‌ର ସଂସାର ଚାଲେ ତାହାର ମାଲିକ ସହିତ ରାସକେଲ୍‌ର ସମ୍ପର୍କ ଉପରେ । ସେଇ ମାଲିକର ସଂସାର ସେମିତି ଚାଲେ ମାଲିକର ଅନ୍ୟମାନଙ୍କ ସହିତ କୁକୁର ଓ ମାଲିକ ସମ୍ପର୍କ ଉପରେ ।

ଏଇ ସଂସାରଟା ଯେଉଛି କୁକୁର ଓ ମଣିଷର ସମ୍ବନ୍ଧର ସଂସାର । ସମସ୍ତେ କୁକୁର । ସମସ୍ତେ ମଣିଷ । ସବୁ କୁକୁର ହେଉଛନ୍ତି ରାସକେଲ୍ ବା ପାଜି । ସବୁ ମଣିଷ ହେଉଛନ୍ତି ରାସକେଲ୍ ପରି ।

ଦ୍ୱି—ଗୋଡ଼ିଆ ଓ ଚାରି—ଗୋଡ଼ିଆ ପ୍ରାଣୀମାନେ ଏଇ ପ୍ରକାରରେ ଛନ୍ଦାଛନ୍ଦ । କୃତଜ୍ଞତା ଓ କୃତଘ୍ନତା ହେଉଛି ସେଇ ଛନ୍ଦର ଦଉଡ଼ି ।

କୃତଜ୍ଞତା ହେଉଛି ବନ୍ଧନ ବା ଶିଙ୍କୁଳି । କୃତଘ୍ନତା ହେଉଛି ବନ୍ଧନର ଖୁଣ୍ଟ ।

ମଣିଷ କୁକୁର ପାଇଁ କୃତଜ୍ଞ ରହିପାରେ ନାହିଁ । କୁକୁର ସେମିତି କୃତଘ୍ନତା ବୁଝେ ନାହିଁ । ରାସଦେଲ୍ କୁକୁର ହୋଇଥିବାରୁ କୃତଜ୍ଞ ହୋଇ ରହିଥିଲା ।

କିନ୍ତୁ ରାସକେଲ୍‌ର ମୁନିବ ଅନେକ । ଜଣେ ହେଲେ ଘରର ବାବୁ । ଆଉ ଜଣେ ବାବୁଙ୍କର ପୁଅ । ଆଉ ଜଣେ ବାବୁଙ୍କର ଚାକର । ଆଉ ଜଣେ ବାବୁଙ୍କର ସ୍ତ୍ରୀ । ସେମିତି ଅଛନ୍ତି ବାବୁଆଣୀଙ୍କର ଝୁଡ଼ୀ । ସମସ୍ତଙ୍କୁ ଚିହ୍ନି ପ୍ରତ୍ୟେକଙ୍କ ପ୍ରତି ସ୍ନେହ, ସଦ୍‌ଭାବ, କୃତଜ୍ଞତା ଦେଖାଇବା ହେଉଛି ରାସକେଲ୍‌ର କର୍ତ୍ତବ୍ୟ ବା ଡ଼ିଉଟି ।

ରାସକେଲ୍ ଖାଲି ବିରକ୍ତ ହୁଏ ଏଇ କାମର ତାଲିକାକୁ ବୁଝି । ବାବୁଙ୍କର ପୁଅ ପାଟି କରେ ଅଙ୍କ, ସାହିତ୍ୟ, ଭୂଗୋଳ ଆଦି ଗୋଳମାଳ ହେଉଛି—ସ୍ମରଣଶକ୍ତି ଅଭାବରୁ । ରାସକେଲ୍ ସେମିତି ମନେ ରଖିପାରେ ନାହିଁ ନିଜ ଓ ପର ମଣିଷ କିଏ । ମାଡ଼ ଖାଇବା ସାର ହୁଏ ।

ପୁଅ ପାଟିକରେ ରାସକେଲ୍ ଉପରେ—ବୋକାଟାଏ । ମୋ' ସାଙ୍ଗଙ୍କୁ ଚିହ୍ନି ପାରୁନାହିଁ । ରାସକେଲ୍ ପୁଅ ମୁହଁକୁ ଅନାଏ ବୋକା ପରି ।

http://oaob.nitrkl.ac.in

ନିୟମ ଗୋଟିଏ ସାର—ନିଜ ଲୋକ ଓ ପରଲୋକ । ଆଉ ପରଲୋକ ଭିତରେ ପୁଣି କିଏ ସୁପାରିସ ପାଇ ନିଜଲୋକ ହୋଇଗଲା ତାହାର ଖବର କେମିତି କୁକୁର ଛୁଆ ଟେସକେଲ୍ ପାଖରେ ପହଞ୍ଚିବ ?

ସଂସାର ଏମିତି ଗଢ଼ିଆଣ ହୋଇଛି ଯେ ତାହାର ମାଲିକର ମନ କଥା ଠଉରାଇ ନିଜର ବୁଦ୍ଧିବିଦ୍ୟା ନ ଖଟାଇ କାମ କରିପାରେ ସେଇ ହୁଏ ଭଲ ଓ ଦରକାରି ।

ଏଇ କାମକୁ ପଶୁ ଜାତି ଅସମର୍ଥ । ତେଣୁ ମଣିଷ ତାକୁ ଗାଳିଦିଏ ପଶୁ ବୋଲି । ଏଇ ସଂସାରରେ ଯେତେ ନ୍ୟାୟ ଥାଆନ୍ତା ଅବା ନ୍ୟାୟ—ବିଗୁର ଥାଆନ୍ତା ତାହା-ହେଲେ ସମସ୍ତ ପ୍ରାଣୀ ଜଗତ ସୁଖରେ ଥାଆନ୍ତେ । ଭଗବାନଙ୍କର ନାମ ଲୋପ ପାଇ ଯାଇଥାନ୍ତା ।

ସୃଷ୍ଟି କରି ସାରି ବିଧାତା କାଢ଼ିନେଲେ ନ୍ୟାୟକୁ । ସମସ୍ତେ ଏଇ ନ୍ୟାୟ ପଛରେ ଅହରହ ଧାଇଁଥିବେ । ନ୍ୟାୟ ଦିଆଇବାକୁ ଭଗବାନଙ୍କୁ ଡାକ ଛାଡୁଥିବେ । ଯେ ଯେତେ ବଳ ଖଟାଇ ନ୍ୟାୟ ମାଗି ଭୁଲିଲା ସେ ହୋଇଗଲା ସେତେ ବଡ଼ ଧାର୍ମିକ ।

ଏଇ ନ୍ୟାୟ ଖୋଜିଥିଲେ ଟେସକେଲ୍‌ର ମାଲିକଙ୍କ ପୁଅ ବେବି । ମାଲିକର ବାପା ବୁଢ଼ା ବାବୁ ।

କୁକୁରର ଛୁଆ କୁକୁର ହୁଏ । ଟେସକେଲ୍‌ର ଛୁଆ କେବଳ ଟେସକେଲ୍ ହୋଇଥାଏ । ତେଣୁ ଟେସକେଲ୍ ଯେ ଘୃଣାର ପାତ୍ର— ଏକଥା ପୂଟ ଭୁଲ୍ ।

ଭୁଲ୍ ଠିକ୍ ହେଲା ଅନ୍ୟ ଜାଗାର କଥା । କିନ୍ତୁ ମାଲିକ ଘରେ ମୁନିବ, ଗୁକର, କୁକୁର ଅଲଗା ଅଲଗା ପାହାଚର । ଜଣେ ବଡ଼ ଓ ସୁବିଧା ଭୋଗ କରେ । ଆରଟି ଛୋଟ ଓ ଅସୁବିଧା ଭୋଗ କରେ । ଏଇ ତଫାତ୍ ହେଉଛି ଈଶ୍ୱରଙ୍କର ଖାମଖିଆଲ । ଏକଥାକୁ ବୁଝିବା, ମାପିବା ଓ ସମୁଝିବା ହେଉଛି ଦେବନ୍ଧ ।

ହେଲେ ବି ଟେସକେଲ୍ ଜାଣେ ସେଇ ଘରଟି ତାହାର । ସେଇ ଘରକୁ ସେ ଜଗାରଖା କରେ । ତେଣୁ ସେ ଭିତରକୁ ଯାଇ ଆସି ପାରିବ ।

ମଣିଷ ସମାଜରେ କୁକୁର ହେଉଛି ଅଛବ । କାହୁ ଚିଟିପିଟି ଘରେ ରହିପାରେ । ବାହାରର ଚଢ଼େଇ ଓ ବିଲୁ ଘର ଭିତରେ ବୁଲି ପାରନ୍ତି । କିନ୍ତୁ କୁକୁର ଘର ଭିତରେ ଚଳପ୍ରଚଳ ହୋଇପାରିବ ନାହିଁ ।

http://oaob.nitrkl.ac.in

ଏତକ ବୁଝାଇବା ପାଇଁ ଗ୍ରେସକେଲ୍ ବହୁତ ଗାଳି ଖାଏ । ପୁଣି ମାଡ ବି ଖାଏ । ଏଇ ଘର ତାହାର ନୁହେଁ ।

ଗ୍ରେସକେଲ୍ ବୁଝେ ଯେ ଅମୁକ ଅମୁକ ଲୋକ ତାକୁ ମାଡ଼ ଗାଳି ଦିଅନ୍ତି । ସେମାନଙ୍କୁ ଦେଖିଲେ ସେ ଆଡ଼େଇ ଯାଏ । କିନ୍ତୁ କେବେହେଲେ ବୁଝେ ନାହିଁ ଯେ, ଘରର ପୋଇଲି ପଣ ସେ ଡଳୁଆ ଜୀବ ନୁହେଁ ।

ଗ୍ରେସକେଲ୍‌ର ବୁଦ୍ଧି ଅଛି । ଗ୍ରେସକେଲ୍‌ର ଦୋଷ [illegible] ଖୋଜେ ବାହାରକୁ ଯାଇ ଏଠି ସେଠି ଖତ ଓ ଖରାପ ଜିନସରେ ମୁହଁ ମାର [illegible] ।

ମନରେ ସେଇ ଖିଆଲ ଆସିଲେ ଗ୍ରେସକେଲ୍ ଅଲଗ ଉଚ୍ଚର ପାଚେରି ଡେଇଁ ଚାଲିଯାଏ । ସେ ତାହାର ଇଚ୍ଛା ଅନୁସାରେ ଯିବ । ବାଚ୍ଛୁଘର ପିଲା ଘର ଛାଡ଼ି ପଳାଇଲା ପଣ । ଚାଲିଗଲାବେଳେ ସେ ତାହାର ସ୍ନେହର ଅଦେଖା ଡୋରି ଛାଡ଼ି ଯାଇଥାଏ ।

ଏଇ ଗ୍ରେସକେଲ୍‌କୁ ବାନ୍ଧି ଏଥର । ତାକୁ ଫିଟାଇଲା କିଏ ? ସେଇ ଲୋକ ଯାଇ ତାକୁ ଆଣୁ । ବଡ ପାଟିରେ ଡାକିଲେ ବି ଗ୍ରେସକେଲ୍ ଗୁହିଁ ରହେ । ପାଖକୁ ଆସେ ନାହିଁ । ତାହାର ମାଡକୁ ଡର ।

ଡର ଆସିବା ଦେଖାଗଲେ ଲୋକର ସହାନୁଭୂତି ଆସେ । ମାଲିକର ରାଗ କମିଯାଏ । ରାଗ ଓ ଶାସ୍ତି ବଦଳରେ କ୍ଷମା ଓ ପୁରସ୍କାର ତାହାର ଲୁଚିଲା ରାଗ ମନରେ ଦେଖାଯାଏ ।

ଗ୍ରେସକେଲ୍ ଗ୍ରେଧ ଅଧରେ ଧରା ହୋଇ ଭିତରକୁ ଆସେ । ଧରିବା ଲୋକର ଆଦର ପାଏ । ଆଉଁସା ମଧ୍ୟ ପାଏ ।

ଗ୍ରେସକେଲ୍ ଭିତରକୁ ଆସିଗଲେ ଧାଇଁ ଚାଲିଯାଏ ତାହାର ବିଛଣା ପାଖକୁ ।

ସେ କୁକୁର ହେଲେ ବି ଜଣେ ମାନ୍ୟଗଣ୍ୟ ପ୍ରାଣୀ । ତେଣୁ ସେ ସିମେଣ୍ଟ ଚଟାଣରେ ଶୋଇବା ପସନ୍ଦ କରେ ନାହିଁ ।

ମାତବର ହାକିମ ଚଉକୀ ଛାଡ଼ି ଷ୍ଟୁଲରେ ବସିପାରେ ନାହିଁ । ସିଗାରେଟ୍ ଛାଡ଼ି ବିଡ଼ି ଫୁଙ୍କିପାରେ ନାହିଁ । ଭଲ ଜାମା ନ ପିନ୍ଧି ଗେଞ୍ଜି ପିନ୍ଧି ଦେଖା ଦେଇ ପାରେ ନାହିଁ ।

http://oaob.nitrkl.ac.in

ଋସକେଲ୍ କୁକୁର ହୁଆ ସେମିତି ତଳେ ଶୋଇପାରେ ନାହିଁ । ତାହାର ଅଖା ଖଣ୍ଡେ ଦରକାର । ସିଏ ବି ଠିକ୍ ସଜଡ଼ା ହୋଇ ପଡ଼ିଥିବ । ଉପରେ ବଳୁକା ଆଲୁଅ ଜଳୁଥିବ । ତେବେ ଯାଇ ଋସକେଲ୍ ଆରାମରେ ଶୋଇବ । କିନ୍ତୁ ଶୋଇବା ଆଗରୁ ସେ ଥରେ ଯାଇ ବାହାରେ ପଙ୍କ କାଦୁଅରେ ବୁଲି ପାରିବ ।

କଠିନ ନିୟମ ଭିତରେ ବାନ୍ଧିହେଲା ଆଣି ସେଥିଭିତରେ ଆନନ୍ଦରେ ରହିବା ସବୁ ପ୍ରାଣୀଙ୍କର ଧର୍ମ । ମଣିଷ ଯେମିତି, କୁକୁର ବି ସେମିତି ।

ଗୃହିଣୀ କରି ଦରମା ନେବ । ଗୃହିଣୀ ଭିତରେ କିଛି ହାତ ପଇଠ କରିନେବ । ଅଭିଯୋଗ ଉଠିଲେ ଠାକୁର ମନ୍ଦିରକୁ ଧାଇଁବ । ତେବେ ଯାଇ ଜୀବନ ସମ୍ପୂର୍ଣ୍ଣ ଓ ଆନନ୍ଦମୟ ।

ସେମିତି ଘର କରି ସ୍ୱାମୀ ସେବା ଭିତରେ ସାମାନ୍ୟ ପର ମଣିଷକୁ ଆପଣାର କରି ସମସ୍ୟା ସୃଷ୍ଟି ନ କଲେ କ'ଣ ଜୀବନଟାକୁ ଉପଭୋଗ କରିହୁଏ କି ?

ମୋଟେ ନୁହେଁ । ଖାଲି ଗୋଟାଏ ଭାଗରେ ସଂସାର ଚାଲେ ନାହିଁ । ପରସ୍ପର ବିପରୀତ ଭାଗ ଦରକାର । ସ୍ୱାସ୍ଥ୍ୟ ସାଙ୍ଗରେ ରୋଗ, ସଂସାର ସାଙ୍ଗରେ ବୈରାଗ୍ୟ, ଚରିତ୍ର ଭିତରେ ଚରିତ୍ରହୀନତା, ପୁଣ୍ୟ ସାଙ୍ଗରେ ପାପ ନ ମିଶିଲେ ସବୁ ଲାଗେ ତୁଚ୍ଛ ।

ଋସକେଲ୍ ସେଇଆ କରୁଥିଲା । ଘରେ ଆଠ ଘଣ୍ଟା ରହିଲେ ବାହାରେ ତିନି ଘଣ୍ଟା ରହିବା ଦରକାର । ଦୁଧ ବିସ୍କୁଟ ମିଳିଲେ ମଧ୍ୟ ଟିକିଏ କାଦୁଅ ଓ ଗୋବର ଖାଇବା ଦରକାର ।

ସେଥି ପାଇଁ ଆମେ ତାରିଫ୍ କରୁ ଗୃହୀ ସନ୍ନ୍ୟାସୀଙ୍କୁ । ସ୍ତ୍ରୀ' ବାଳକ ଧରି ଯୋଗ ସାଧିଲେ ସିନା ସଂସାରକୁ ଆଦର୍ଶ ପରି ଦିଶିବ । କେହି ନ ଥାଇ ଖାଲି ଥୁଣ୍ଟା ଥୁଣ୍ଟା ଯୋଗ ସାଧିଲେ ସେ ଲୋକ ଆମର ଶତ୍ରୁ ।

ଦୋଷ ନ ଥିଲେ କାହାକୁ ଛିଡ଼ା ନାହିଁ । ପର ଧୁଆରେ ହାତ ପଶାଇବାର ପ୍ରୟୋଜନ ନାହିଁ । ସେମିତି ହେଲେ ଜୀବନର ସୁଆଦ ନାହିଁ । ଏଇ କଥା ଦେଖାନ୍ତି ସଂସାରର ଋସକେଲ୍ ଦଳ । ସମସ୍ତେ ଖୋଜି ବୁଲାନ୍ତି ସାଧୁ ରତ୍ନାକରଙ୍କୁ—ଯିଏ ପଙ୍କରୁ ଉଠିପାରିଛି ।

ଋସକେଲ୍ ର ସବୁ ମାଫ୍ । କାରଣ ସେ ଆମପରି ଜଣେ । ଦାନ୍ତ ଘଷି ସାରିଲେ ପାଟି ଠିକ୍ ହୁଏ । ପାଇଖାନା ଯାଇ ସାରିଲେ ପେଟ ଠିକ୍ ହୁଏ । ଦୋଷ କରି ସାରିଲେ ଗୁଣ ବାହାରେ ।

http://oaob.nitrkl.ac.in

ଏଇ ଜଗତ ଯାହା ଦେଖାଉଛି କୁକୁର ବି ସେଇଆ ଦେଖାଉଛି । ଗୁଣକୁ ଆଦର କରି ଦୋଷକୁ ପାସୋରି ଯିବା ହେଉଛି ଜୀବନର ମୂଳମନ୍ତ୍ର ।

ଗ୍ରେସକେଲ୍ ସେତକ ଶିକ୍ଷା ଦେଉଥିଲା । ସେ ଶ୍ରେଷ୍ଠ ନୁହେଁ—ସେ ବି ପ୍ରଶଂସାର ଯୋଗ୍ୟ, ସ୍ନେହର ପାତ୍ର ମଧ୍ୟ । ପୁଅ ଯାହା, ସ୍ତ୍ରୀ ସେଇଆ । ପୋଷା କୁକୁର ମଧ୍ୟ ସେଇଆ ।

ଦୋଷକୁ ଜଗି ରହିବା ହେଲା ସଂସାରର କାମ ।

ଗ୍ରେସକେଲ ଏମିତି ତାହାର ଉତ୍ସାହ ଓ ଅଭ୍ୟାସ ଭିତରେ ଦିନକୁ ଦିନ ନିକଟକୁ ଆସୁଥିଲା ।

ଭଲପାଇବା ହେଉଛି ଏମିତି ଗୋଟାଏ ଅଭ୍ୟାସ । ବାରମ୍ବାର ଭଲ ପାଇଲେ ଭଲପାଇବା ଧୂଳି, ମଇଳା, ଆଲୁଅ ଓ ପରିଚ୍ଛନ୍ନତାର ଆବରଣ ହେଇଯାଏ ।

ସନ୍ଧ୍ୟାବେଳେ ଖବର ମିଳିଲା—ଗ୍ରେସକେଲ୍ ମରିଯିବ । ସେ ବିଷ ଖାଇଦେଇଛି ।

ହଠାତ୍ ଯେପରି ଝଡ ଆସି ପହଞ୍ଚିଗଲା । କ'ଣ ହେଲା ? ଗ୍ରେସକେଲ୍‌କୁ ବିଷ ଦେଲା କିଏ ?

—ଏଇ ଟିମ୍ମା ପରି ।

—କେମିତି ଓ କାହିଁକି ବିଷ ଦେଲା ?

—ସେ ନେଉଥିଲା ବିଷ ଖାଇ ମରିଥିବା ଚୂଟିଆ ମୂଷାକୁ । ଗ୍ରେସକେଲ୍ ଧାଇଁଲା ତାହାର ପଛେ ପଛେ ମୂଷାକୁ ଖାଇବା ପାଇଁ । ଟିମ୍ମା କହିଲା ଆଉ ଜଣକୁ—ଦେଖିବ ରହ, ମୁଁ ଗ୍ରେସକେଲକୁ ମୂଷା ଖୁଆଇ ଚକ୍‌କଣ କରିଦେବି ।

ସେଇ ଟିମ୍ମା ମୂଷାଟିକୁ ଦେଇଥିଲା ଗ୍ରେସକେଲକୁ । ମୂଷାଟା ଯେ ବିଷ ଖାଇ ଗୋଟାଏ ବିଷ ବଡି ହୋଇଯାଇଛି, ଏତକ ଭୁଲି ଯାଇଥିଲା ।

ଗ୍ରେସକେଲ୍ ମୂଷା ଖାଇବାର ଘଣ୍ଟାକ ପରେ ଚହଲି ପଡିଗଲା ।

ସନ୍ଧ୍ୟା ହୋଇ ଆସିଲାଣି । ପଶୁ ଡାକ୍ତରଖାନା ବନ୍ଦ ହୋଇଯିବଣି । ଡାକ୍ତର ଏବେ ମିଳିବେ ନାହିଁ । ଗ୍ରେସକେଲ୍‌କୁ ବଞ୍ଚାଇ ହେବ କେମିତି ?

ଛଅ ମାସର ଛୁଆ କୁକୁର । ବିଚରା ମରିଯିବ । ସେଇ ରାତିରେ ଆଖି ଆଗରେ ମରିଯିବ । ଜଣେ ଲୋକର ବିଗୃର ବିଭ୍ରାଟରୁ ।

http://oaob.nitrkl.ac.in

ବଗ୍ଘର ବିଭ୍ରାଟରେ ମଣିଷ ମରେ । ଗଛଲଟା ମରନ୍ତି । ଯୁଦ୍ଧକ୍ଷେତ୍ର ରକ୍ତରେ ଭରିଯାଏ । ପରୀକ୍ଷାରେ ହଜାର ହଜାର ପିଲା ଫେଲ ହୁଅନ୍ତି । ଦେଶରେ ହଜାର ହଜାର ଲୋକ ବେକାର ହୁଅନ୍ତି ।

ମୂଳରେ ଥାଏ ଜଣେ ପଦସ୍ଥ ଧାଙ୍ଗର ଗୋଟାଏ ଭୁଲ୍ କି ଖିଆଲ । ଏଣେ ଶହ ଶହ, ହଜାର ହଜାର ଲୋକ ସର୍ବସ୍ୱାନ୍ତ ହୋଇଯାନ୍ତି ।

ବେ ଟିମା—ରୁ ମୂଷା ଦେଲୁଁ କାହିଁକି ? କ'ଣ ଅବା କରିବ ଆମ ରାସକେଲ୍ ?

ଯେତେ ହେଲେ ମୂଷାମାର । ଘରର ଲୋକେ ଧାଇଁଲେ ଏଇ ସବୁ କୀଟପତଙ୍ଗ ଓ ମୂଷାମାରର ପ୍ରତିକାର କ'ଣ ?

ବାନ୍ତି କରାଇ ଦିଅ । କୁକୁରକୁ ସୋରିଷ ତେଲ ପିଆଇ ଦିଅ । ହେଲେ ଯେତେ-ବେଳେ ଦେଢ଼ ଘଣ୍ଟା ହୋଇଗଲାଣି ସେ ବଞ୍ଚିବାରେ ସନ୍ଦେହ ଆସୁଛି । ଯଦି ସେ ବଞ୍ଚିଯାଏ ତେବେ ଓଳିଏ ଖଣ୍ଡେ ଭୁଲାଇ ସକାଳକୁ ମରିଯାଇଥିବ ।

ବାନ୍ତି ହେଉ ନାହିଁ । ରାସକେଲ୍ ପାଟିରୁ ଫେଣ ବାହାରୁଛି । ତାହାର ମରିବା ଘାଟ ହୋଇ ଆସୁଛି । ତାହାର ମରଣକୁ ଅଟକାଇ ହେବ ନାହିଁ ।

ରାସକେଲ୍ ବ୍ୟସ୍ତ ହେଉଛି । ସେ ବିସ୍କୁଟ ଖାଇବାକୁ ଭଲ ପାଏ । କିନ୍ତୁ ବିସ୍କୁଟରୁ ମୁହଁ କାଢ଼ି ନେଉଛି ।

—ହେଇ ରାସକେଲ୍ ବାନ୍ତି କଲାଣି ତାହାର ବାନ୍ତିରେ ମୂଷାର ଖଣ୍ଡ ବାହାରୁଛି ବୋଲି ତାକୁ ଖାଇବାକୁ ରାସକେଲର ସାଙ୍ଗ ଭଉଣୀ ମାଡ଼ି ଆସୁଛନ୍ତି । ସେ ଗୁଡ଼ାକ ବି ମରିବେ । ରାତିକ ଭିତରେ ପିଣ୍ଡା ଖାଲି ହୋଇଯିବ ।

ବିପଦ ମାଡ଼ି ଆସୁଛି । ମରଣ ଆସି ପହଞ୍ଚି ଯାଇଛି । ମୁନ୍‌ସିପାଲିଟି ଲୋକ ବିଷ ମିଠେଇ ପକାଇ ନାହାନ୍ତି । ନିଜର ଘର ଭିତରେ ଘର ଲୋକଙ୍କ ଭୁଲରେ ଛୁଆ କୁକୁରଟା ମରିଯିବ ।

ପଶୁଡାକ୍ତର ଖବର ଦେଲେ—ତାକୁ ଗ୍ଳୁକୋଜ ପିଆଇ ଦିଅ । ତାହାର ଦେହ ବଳ ପାଇବ । ବାନ୍ତି କରୁଛି—ବେଶି ହେଉ କମ୍ ହେଉ ବିଷ ଖସିଛି । କୁକୁରଟା ପ୍ରଥମ ଛୁଆ—କୋଡ଼ପୋଛା ନୁହେଁ । ଅଣ୍ଟିରି କୁକୁର । ବେଶ୍ ଫୁର୍ତ୍ତି । ତେଣୁ ବଞ୍ଚିବା ସମ୍ଭବ ।

http://oaob.nitrkl.ac.in

ପଚଶି ପଇସାର ମୁଷ୍ଟାମାଗରୁ କେଞ୍ଝେ ଖାଇ ସେ ପାଞ୍ଚଟଙ୍କାର ଗ୍ଳୁକୋଜ ପିଇଲା । ତେବେ ବି ସେ କ୍ଳାନ୍ତ । ଭଲ ଚାଲିପାରୁ ନ ଥାଏ ।

ଡାକ୍ତର କହିଛନ୍ତି ଯେ କୁକୁର ଦେହରେ ବିଷ ରହିଗଲେ ସେ ପାଗଳ ହୋଇ-ଯିବ । ତେଣୁ ସାବଧାନ ରହିବା କଥା ।

ଗ୍ରସକେଲ୍ ତେବେ ଘରେ ଆଉ ରହିବ ନାହିଁ । ସେ ଗାଡରେ ଫିଟେ, କିନ୍ତୁ ସେ ଦିନ ଗାଡରେ ସେ ଫିଟିବ ନାହିଁ । ସେ ଦୂରରେ ରଖା ହେବ । ମଲେ ସେ ଏକା ମରିବ ଯିନା କିନ୍ତୁ କୁକୁର ପଲକୁ ପାଗଳ କରି ମାରିବ ନାହିଁ ।

ଗ୍ରସକେଲ୍ ବନ୍ଧା ହେଲା ଦୂରରେ । ପାଖରେ ତାହାର ମା' ନାହିଁ । ଭାଇ-ଭଉଣୀ । ଦୂରରେ ଗ୍ରସକେଲ୍ କାନ୍ଦିବାକୁ ଆରମ୍ଭ କଲା ।

ଠିକ୍ ମଣିଷ ପରି । ମତେ ଦୂରରେ ରଖିଛ କାହିଁକି ? ମୋ' ପାଖରେ ମୋର ନିଜର କେହି ନାହାନ୍ତି କାହିଁକି ?

ଗ୍ରସକେଲ୍‌ର ସେଇ ରୋଗିଣା ଦେହର ଦୁର୍ବଳ କାନ୍ଦଣା ସମସ୍ତଙ୍କ ଛାତିକୁ ଆଘାତ ଦେଉଥିଲା । ନିଜ ଭୁଲରେ ତାକୁ ବିଷ ଦେଇ ଦଣ୍ଡ ଦେବା ଭୁଲ ।

ଯାହା ହେଉଛି ହେଉ—ଗ୍ରସକେଲେ ଚାଲିଆସୁ ଘରକୁ ।

ଯଦି ପାଗଳା ହୋଇଯାଏ ।

—ହେଲେ ହେବ । ଯାହା ଭାଗ୍ୟରେ ଥିବ । ସେ ଏମିତି ଗାଡଯାକ କାନ୍ଦି କାନ୍ଦି ସକାଳୁ ନିଶ୍ଚେ ମରିଯାଇଥିବ ।

ଗ୍ରସକେଲ୍ ପୁଣି ଆସିଲା ଘରକୁ—ଏକାବେଳେକେ ଘର ଭିତରକୁ ।

ଅଖା ଦିଆ ହେଲା । ଗଲା କମ୍ବଳର ଦିଆଗଲା । ପାଖରେ ପାଣି ଓ ଅଖା ଦିଆ ହେଲା । ଗ୍ରସକେଲ୍ ଖୁସି ହୋଇ ଶୋଇଲା । ସେ ସେଦିନ ବାହାର ପିଣ୍ଡାରୁ ଘର ଭିତରକୁ ଆସିଛି । ଗ୍ରସକେଲ୍‌ର ଆନନ୍ଦ ଠିକ୍ ମଣିଷର ଆନନ୍ଦ ପରି । ସେ ନିଜର ହୋଇପାରିଛି ।

ଗ୍ରସକେଲ୍ ଶୋଇପଡ଼ିଲା । ଆଉ କାନ୍ଦିବା ଦରକାର ନାହିଁ । ପାଗଳା ହୋଇଯିବା ଡର ଚାଲି ଆସିଲା ଘର ଭିତରକୁ । ଏକା ଘର ଭିତରେ ଗ୍ରସକେଲ୍ ଓ ମଣିଷ ।

http://oaob.nitrkl.ac.in

ଯେତେ ଡର ହେଲେ ବି ନିଦ ଆସିଲା । ଡର ହଟିଗଲା ପଛକୁ । ନିଦ ନ ଥିଲେ ମଣିଷ ଡରରେ ମରିଯାନ୍ତା ।

ସକାଳ ହେଲା ।

ଆରେ ସ୍ୱିସକେଲ୍ ବଞ୍ଚିଛି । ସେ ପାଣି ପିଇ ଦେଇଛି । ତେବେ ପାଗଳା ହବ ନାହିଁ । ପାଣି ପିଉଛି···ଆହା ଟିକିଏ ଯଦି ଲଙ୍ଗୁଳଟାକୁ ହଲାନ୍ତା । ଦୁଧ ଟିକିଏ ପିଇ ବଳୁଆ ହୋଇଯାନ୍ତା ।

କୁକୁରକୁ ଦେଖିବା ଦରକାର ପଡ଼ିଲା । ସେ ଭଲ ହେଇଗଲାଣି । ତାହାର ନାକ ଓଦାଳିଆ ଦିଶୁଛି । ସେ ଭଲ ହୋଇଯିବ ।

ସ୍ୱିସକେଲ୍ ଭୁଲଭୁଲି ଆରମ୍ଭ କରିଦେଲା । ସେ ମରଣ ପାଖରୁ ଫେରି ଅସିଛି ।

ସକାଳ ପହରରେ ସ୍ୱିସକେଲ୍ ଗୁଲିଲି ଶିକୁଳି ଚର୍ଚ୍ଚି ପଶୁ ଡାକ୍ତରଖାନା । ଟିମା ଯେମିତି ତାକୁ ବିଷ ଦେଇଛି ସେମିତି ସେ ନେଉ ।

—ଯଦି ପାଗଳା ହୋଇଯାଏ ।

—ବୋକାଟାଏ । ଆରେ ପାଗଳା କୁକୁର ଲଙ୍ଗୁଳ ଟେକେ ନାହିଁ କି ପାଣି ପିଏ ନାହିଁ । ସ୍ୱିସକେଲ ହ' କଥା କରୁଛି । ତାହାର ଆଖି କେତେ ସୁନ୍ଦର ଦିଶୁଛି । ମୁହଁ କେତେ ଚଞ୍ଚଳିଆ ଦିଶୁଛି ।

ଡାକ୍ତରଖାନାରେ ପହଞ୍ଚି ସ୍ୱିସକେଲ୍ ବଡ଼ ବଡ଼ କୁକୁରଙ୍କ ଉପରେ ଚଢ଼ାଉ କରିବା ଆରମ୍ଭ କରିଦେଲା ।

ଡାକ୍ତରବାବୁ ସ୍ୱିସକେଲ୍ କାମ ଦେଖି ଖୁସି ହେଲେ । କି କୁକୁର ଏଇଟା ?

—ମିଶା ।

—ଭଲ ଜାତର ବାପ ମା' ନ ହୋଇଥିଲେ ସେ ଏତେ ଫୁର୍ତ୍ତି ହୁଅନ୍ତା ନାହିଁ ।

ସ୍ୱିସକେଲ୍‌ର କାରବାର ଦେଖି ସ୍ୱିସକେଲ୍ ପାଇଁ ଗୁଲିଣି ଟଙ୍କାର ଔଷଧ ଓ ଇଞ୍ଜେକ୍‌ସନ ବଜାରରୁ ଆଣିବାକୁ ବରାଦ ଦେଲେ ।

କଳଙ୍କିଖିଆ ମୋଟା ଜଞ୍ଜିରରେ ସ୍ୱିସକେଲ୍‌କୁ ବାନ୍ଧି କରି ନେବାକୁ ଟିମାବାବୁ ରାଜିହେଲେ ନାହିଁ । କାରଣ ଟିମା ବାବୁ କଟକର ବଡ଼ ସ୍କୁଲ୍ କଲେଜିଏଟ୍ ସ୍କୁଲର ଅଷ୍ଟମ ଶ୍ରେଣୀର ଛାତ୍ର—ପୁଣି ଛାତ୍ରଙ୍କର ମନିଟର ।

http://oaob.nitrkl.ac.in

ନିଜର ସ୍ଥିତି ଓ ମର୍ଯ୍ୟାଦାକୁ ଗୃହିଁ ମଣିଷ ଚଳିବା କଥା । ଭଲ ଚେନ୍ ନ ମିଳିବାରୁ ଟିମା ଗ୍ରସକେଲ୍‌କୁ ଗୋଟିଏ ସରୁ ନାଇଲନ ଦଉଡିରେ ବାନ୍ଧି ନେଇଥିଲା । ଔଷଧ କିଣିବାକୁ ଗଲାବେଳେ ଗ୍ରସଲ୍‌କେକୁ ପୁଣି ରିକ୍‌ସାରେ ବସାଇ ଔଷଧ ଦୋକାନକୁ ନେବାପାଇଁ ପଡ଼ିବ ।

ଔଷଧ ଲେଖିଲାବେଳେ ଡାକ୍ତର ସାହେବ ପଚାରିଲେ—ନାଁ କ'ଣ ?

—ଟିମା ।

—କାହାର ନାଁ—ତୋର ନା କୁକୁରର ?

—ମୋର ।

—କୁକୁର ନାଁ କ'ଣ ?

ଟିମା ଚୁପ୍ ରହିଗଲା । ସେ ଜାଣେ ଗ୍ରସକେଲ୍ ସେମିତି ମାନଥାନର ନାଁ ନୁହେଁ ।

—କ'ଣ ନାଁ ?

—କିଛି ନାହିଁ ।

କ'ଣ ? ଏତେବଡ କୁକୁରର ନାଁ ଦିଆ ହୋଇ ନାହିଁ ? ଅଲ୍‌ବତ୍ ନାଁ ଅଛି ।

ପଶୁ ଡାକ୍ତରଙ୍କ ପାଖକୁ ତାଙ୍କର କମ୍ପାଉଣ୍ଡର ଓ ଡ୍ରେସର ଲାଗି ବସିଥିଲେ ବୁଝିବା ପାଇଁ ଯେ କେମିତି କୁକୁର ଛୁଆକୁ ନାଁ ଦିଆ ହୋଇ ନାହିଁ ।

ଏତେ ଆଚମ୍ବିତ କଥାକୁ ବୁଝିବା ପାଇଁ କଟକର ପଶୁଡାକ୍ତରଖାନା କାମ ପାଞ୍ଚ ମିନିଟ୍ ବନ୍ଦ ହେଲା । ହଠାତ୍ ବିଜୁଳି ଆଲୁଅ ଲିଭିଗଲେ ଯେମିତି ସହର ବଜାରର ଘଡଘଡି ବିରକ୍ତିକର ହୋଇ ଉଠେ ସେମିତି ସମସ୍ତେ ବିରକ୍ତ ହୋଇଗଲେ ।

ଟିମା କହିଲା—ନାଁ ତାହାର ଗ୍ରସକେଲ୍ ।

ହସରେ ଗୋଟିଏ ଡାକ୍ତରଖାନା ଥରି ଉଠିଲା । ବାଃ, ବାଃ, ଭଲ ନାଁଟାଏ ବାଛି-କରି ଦେଇଛନ୍ତି ।

ଟିମା ବ ଦ' ଗୁରିଟା ପିଠି ଆପୁଡା ପାଇଲା ଗ୍ରସକେଲ୍‌କୁ ଆଣିଛି ବୋଲି । ଗ୍ରସକେଲ୍‌ର ମୁଣ୍ଡକୁ ଜଣେ ଅଧେ ଆପୁଡ଼ାଇ ଦେଲେ— ବଢ଼ିଆ ନାଁଟାଏ ପାଇଛି ବୋଲି ।

http://oaob.nitrkl.ac.in

ଡାକ୍ତର ଅନ୍ୟ ରୋଗିଣୀ କୁକୁରର ମାଲିକଙ୍କୁ କହିଲେ—ଏବେ ଶୁଣିଲେ ତ କୁକୁରର ନାଁ କେମିତି ବଢ଼ିଯାଏ ।

ରାସକେଲ୍ ଦେହରୁ କଷ୍ଟ କମିଗଲାଣି । ସେ ଏମିତି ବାହାବା ପାଇ ଯାଉଛି ବୋଲି ଖୁସି ହେଉଥିଲା । ନିମ୍ନ ପ୍ରାଥମିକ ମେଧାବୀ ବୃତ୍ତି ବ୍ଲକ୍ ସୀମାରେ ମିଳିଲେ ସେଇ କୃତୀ ପିଲା ଓ ତାହାର ବାପା ମାଆ, ଅଜା ଅଇ, ମାମୁଁ ମାଇଁ ଯେମିତି ଏକାବେଳେକେ ଫୁଲି ଉଠି ଭାବନ୍ତି ଯେ ନିମ୍ନ ପ୍ରାଥମିକ ବୃତ୍ତି ପରୀକ୍ଷାର ପରିଷ୍କାର ପ୍ରତିଭାକୁ ସ୍ୱର୍ଗ ମାତ୍ର ଚାରି ଆଙ୍ଗୁଳ ବ୍ୟବଧାନ ।

ସେଦିନ ରାସକେଲ୍ ତାହାର ଗରିବ ମାଲିକକୁ ଏଇ ଧନୀ ମାଲିକର କଟକ ସହରରେ ପରିଚିତ କରାଇ ଦେଇଛି । ଅନ୍ୟ ଆଲସେସିଆନ୍ କୁକୁରଙ୍କୁ ଚିଡ଼ାଇ କରିବାକୁ ଯାଇ ନିଜେ ମଧ୍ୟ ଡାଲମେସିଆନ୍ ଜାତି ହୋଇଗଲା ।

ଓଲି ଯେମିତି ଦିନେ ଦିନେ ଗ୍ରହକର ଯୋଗୁ ପୁଲିସ, ଅମୀନ କି ଗୁଇନ୍ଦା ହୋଇ ନିଜର କୁଳଗୋତ୍ରକୁ ବି ଉପରକୁ ଉଠାଇନିଏ ।

ସମସ୍ତେ ଉଠିଯାନ୍ତି । ଉପରକୁ ମନ୍ତ୍ରୀ, କଲେକ୍ଟର ଓ ହାକିମଙ୍କ ସ୍ତ୍ରୀ ମେମ୍‌ସାହେବ ହୋଇଯାଏ । ବାବୁମାନେ ସାହେବ ହୋଇଯାଆନ୍ତି । ସାହାବଙ୍କର ଅନେକ ଥିବା ଓ ନଥିବା ଗୁଣ ମଧ୍ୟ ହଠାତ୍ ଜଣାପଡ଼ିଯାଏ ।

ଏଥିପାଇଁ ଦରକାର ଗୋଟିଏ ଉପଲକ୍ଷ—ନିମ୍ନ ପ୍ରାଥମିକ ବୃତ୍ତି ବ୍ଲକ୍ ସ୍ତରରେ ଅବା ମାନ୍ଦ୍ରାଜର କମ୍ପାଉଣ୍ଡରୀ ସ୍କୁଲରେ ପୁଅ ଲମ୍ବା ଡିଆଁରେ ଦ୍ୱିତୀୟ ହେବା ଅବା ପି. ଏଚ. ଡ଼ି. ସନ୍ଦର୍ଭ ଦାର୍ଜିଲିଂ ବା ବର୍ଲିନରେ ଅମୁକ ଅଧ୍ୟାପକ ପଢ଼ି ସୁପାରିସ୍ କରିବା ।

ସେମିତି ରାସକେଲ୍ ତାହାର ବଖାରି ମୁଷାଟିକୁ ଖାଇଦେଇ ସେଦିନ ସକାଳେ ଓଡ଼ିଶାର ରାଜଧାନୀ କଟକ ସହରରେ ତାହାର ଅପଦାର୍ଥ ମାଲିକକୁ ସେଇ ପଶୁଡାକ୍ତରଖାନାର ହତାରେ ପ୍ରସିଦ୍ଧ କରିଥିଲା ।

ରାସକେଲ୍ ଇଞ୍ଜେକ୍‌ସନ୍ ନେଇ ପୁଣି ରିକ୍‌ସା ଚଢ଼ି ଘରକୁ ଫେରିଲା । ଘରର ରୋଗୀ ନିରାମୟ ହୋଇ ଶ୍ରୀରାମଚନ୍ଦ୍ର ଭଞ୍ଜ ଡାକ୍ତରଖାନାର ଖଟିଆରୁ ଘରକୁ ଫେରୁଛି ।

ଏଣିକି ପୁଣି ଘର ପୁରି ଉଠିବ । ସମସ୍ତଙ୍କର ମୁହଁରେ ଆଶ୍ୱାସନା ଯେ ରାସକେଲ୍ ବଞ୍ଚିଗଲା । ସେ ପାଗଳା ହୋଇଯିବ କି ନାହିଁ ଏତିକି ଲକ୍ଷ୍ୟ ରଖିବା କଥା ।

http://oaob.nitrkl.ac.in

ସେଦିନ ସକାଳେ ରାସକେଲ୍‌ ତେୟାଳିଶି ଟଙ୍କା ଖର୍ଚ୍ଚ କରାଇ ଦେଇଥିଲା । ସେ ନିଜେ ରୋଜଗାର କରି ନାହିଁ କି ତାହା ପାଇଁ ମାଲିକ ବି ଦଶପଇସିଟିଏ ଦେଇ ନାହିଁ । କିନ୍ତୁ ନିଜ ପାଇଁ ଖରଚ କରାଇ ପାରିଛି ।

କିଏ କହୁଛି ଯେ ମଣିଷ ମରିଯିବ ? କିଏ ବୁଝି କହୁ ଅବା ପାରିଲା ଯେ କୁକୁର ଛୁଆ ମରିଯିବ ? କିଏ ଅବା କ'ଣ କ'ଣ କରିପାରିବ—ନିଜ ପାଇଁ କି ପର ପାଇଁ ?

ସରକାର ମତେ ଦେଇପାରେ କି ନ ଦେଇପାରେ; କିନ୍ତୁ ମୋର ଚାଇରେ ମୁଁ ନିଜର ଲୋକଙ୍କୁ କାହିଁକି ନ ରଖିବି ?

ରାସକେଲ୍‌ ଘରେ ଆସି ତାହାର ଦୁଧ ବିସକୁଟ୍‌ ଖାଇଲା । ଆଗ ସନ୍ଧ୍ୟାର ଦୁଃସ୍ୱପ୍ନ ମିଳେଇଯାଇଛି—ସୁଲୁସୁଲିଆ ପବନରେ । ଥାଳରେ ଥୁଆ ହୋଇଥିଲା କାଲସିଅମ୍‌ ଓ ଭିଟାମିନ୍‌ । ରାସକେଲ୍‌ ଯାହାକୁ ଖାଇବ ତାକୁ ବି ରାସକେଲ୍‌ର ମାଲିକ ଖାଇ ତାହାର ମେଧା ଓ ମସ୍ତିଷ୍କକୁ ଜୋରଦାର କରି ଅଙ୍କ କଷିବ ବା ବ୍ୟାକରଣ ମୁଖସ୍ଥ କରିବ ।

ଯାହାର ଚୂଲି କୁଣ୍ଡ ନିଜେ ରୋଜଗାର ନ କରି ତାହାର ପିଲା ପାଇଁ ସବୁ ବ୍ୟବସ୍ଥା କରାଇଦେଇ ଶୋଇ ରହୁଥିଲା ।

ମନ୍ତ୍ରୀଙ୍କର ଚାମଚା ହେଲେ ଯେମିତି ଘରକୁ ଘିଅ ଓ ମାଛ ଚାଲିଆସେ ସେମିତି କୁଣ୍ଡ ତାହାର ଛୁଆକୁ ବାବୁଙ୍କର ଚାମଚା କରାଇ ଦେଇ ନିଜେ ବିଶ୍ରାମ କଲା ।

ଏମିତି ବିଶ୍ରାମ କରୁଛନ୍ତି ଅନେକ ଲୋକ—ମୁଁ, ତମେ, ସେମାନେ । ଓଡ଼ିଆ ବଙ୍ଗାଳୀ ଓ ପଞ୍ଜାବୀ ଆଦି ଅସଂଖ୍ୟ ଜାତି । ସମସ୍ତେ ଚୁପି ଯେ କାମ କରୁଛନ୍ତି—ପିଅନ, ରୋଷେଇଆ, କିରାଣି, ଚାକର, ମାଷ୍ଟର, ଓକିଲ, ଡାକ୍ତର ନ ହେଲେ ବାଜାବାଲା ଅବା ନବକିଆ ।

ଘରେ ଆସି ତାଙ୍କର ମାଇପ ପାଖରେ ସାଧ୍ୱୀରବର କର୍ତ୍ତବ୍ୟନିଷ୍ଠ ଲୋକ । କାଲି ଉଠିଲା ପରି ସକାଳୁ ଉଠି ଚାମଚା କାମରେ ଲାଗିଯାନ୍ତି ।

ଶିକାରର ପଛୁଆ ବାହୁନି ଅବା ଦରବାରର ପାରିଷଦ ହୋଇ ମନେ ମନେ ମହାଖୁସି ଯେ ସେମାନେ କର୍ମବୀର । ଏଣେ ମୂଲ୍ୟ କଲେ ନେବାକୁ କେହି ଜଣେ ବି ରାଜି ନୁହେଁ ।

http://oaob.nitrkl.ac.in

ଯେଉଁମାନଙ୍କର ଦାମ୍ ଖୁବ୍ କମ୍—ଛିଣ୍ଡା କାଗଜ, ଚିରା ଲୁଗା, ଭଙ୍ଗା ବୋତଲ ପରି ସେଇମାନେ ବେଶି ଜାଗା ନିଅନ୍ତି ଓ ବହୁତ ଉଜ୍ଜ୍ୱଳ ଶୁଣାନ୍ତି ସଂସାର ବିଷୟରେ। କିଏ ଇଂରାଜିରେ, କିଏ ସଂସ୍କୃତ କି ହିନ୍ଦୀରେ ଅବା କିଏ ଓଡ଼ିଆ ବଙ୍ଗାଳୀରେ।

ରାସକେଲ୍ ଏ ସବୁର ଧାର ଧାରେ ନାହିଁ। ସେ ଭାଗ୍ୟବାନ୍। ତେଣୁ ସେ କିଛି ନ କରି ବହୁତ ପାଇବ। କାହାରିକୁ କୃତଜ୍ଞତା ଦେଖାଇବ ନାହିଁ। ସେ ଜଣେ ବଡ଼ ପ୍ରାଣୀ। ତାକୁ ଅନ୍ୟମାନେ ଖୁସାମଦ୍ କରିବେ, କିନ୍ତୁ ସେ ରହିବ ଚୁପ୍‌ଚାପ୍।

ବିଧାନସଭା ଓ ଲୋକସଭାର ସଭ୍ୟପଦ ମିଳିଲେ କ'ଣ ଭୋଟ ଦେଇଥିଲେ, ବୋଲି ଆଉ ଥରେ ଘର ଘର ବୁଲି ହାତ ଯୋଡ଼ି ନଇଁକି ହୋଇ ନିଜର କୃତଜ୍ଞତା ଜଣାଇବ ? ଡାକ୍ତରଖାନାରେ ଥିଲାବେଳେ ତୁମେ ଆସି ମତେ ଦେଖି ମୋ' କଥା ବୁଝିଥିଲ ବୋଲି କ'ଣ ମୁଁ ପୁଣି ଥରେ ପୃଥିବୀ ପରିକ୍ରମା କରି ତୁମକୁ ମନର ଭାବ ଜଣାଇବ ?

ନା, ନା, ମୁଁ କରିବ ନାହିଁ ? ମୁଁ ରାସକେଲ୍ ପରି ଗୋଟିଏ କୁକୁର। ତୁମଠାରୁ ତୁମର ସେବା ଯତ୍ନ, ସେବା ସ୍ନେହ, ଆଦର କର୍ତ୍ତବ୍ୟ ଯାହା ମିଳିବ ନେଇଯାଇ ନିଜର ଇଚ୍ଛା ଅନୁସାରେ ଚଳିବ। ତୁମେ ମତେ ଯାହା ଦେଇଗଲ ଦେଇସାରିଛ। ଏବେ ଫେରିଯାଅ ନିଜର ଆସ୍ଥାନକୁ।

ପାଣି ଗଡ଼ି ଯାଇଛି। ପବନ ବୋହିଯାଇଛି। ସଞ୍ଜ ଓ ସକାଳକୁ କାଖେଇ ଦିନ ଗୁଡ଼ାକ ଚାଲିଯାଇଛି। ସମସ୍ତେ କୃତଘ୍ନ ଓ ଆପଣା ସାର୍ଥିକା। ସମସ୍ତେ ରାସକେଲ। ସମସ୍ତେ ରାସକେଲ୍ ପରି କୁକୁର।

ଏଇ କୁକୁର ସମାଜରେ ଆମେ ମଣିଷମାନେ ରହି ଓ ଚଳି ଦେବତାଙ୍କୁ ଖୋଜିବାରେ ଲାଗିବା। ଇଚ୍ଛା ହେଲେ କୁକୁରକୁ ଠାକୁର ମନେକରି ପୂଜା କରିବା, ନ ହେଲେ ଠାକୁରଙ୍କୁ କୁକୁର ମନେକରି ନିଜର ଆଦର୍ଶ ସ୍ଥିର କରିବା।

ସେଇ କୌତୁକିଆ ରାସକେଲ୍ ସେଦିନ ସକାଳେ ସେମିତି ନିଜର ଅସଂଖ୍ୟ ରୂପ ଦେଖାଉଥିଲା—ସେ ମଣିଷଠାରୁ ବଡ଼। ପୁଣି ସେ ମଣିଷଠାରୁ ଶ୍ରେଷ୍ଠ।

ଏତିକି ହେଉଛି ସଂସାର। ଭାତ ଓ ରୁଟି ସମାନ। ପାଣି ଓ ପବନ ସମାନ। ଚଣ୍ଡାଳ ଓ ସାଧୁ ସମାନ। ତୁମେ ଓ ମୁଁ ସମାନ। ଲେଖକ ଓ ପାଠକ ସମାନ। ବହି ଦୋକାନୀ ଓ ବହି ଲେଖାଳୀ ସମାନ। ସମସ୍ତେ ସମସ୍ତଙ୍କ ସାଙ୍ଗରେ ସମାନ।

http://oaob.nitrkl.ac.in

ଏତକ ବୁଝିପାରିଲେ ତୁମେ ଓ ମୁଁ ରାସକେଲ୍‌କୁ ନେଇ ନିଜର ବିଛଣାରେ ଶୁଆଇ ପାରିବା । ରାସକେଲ୍‌କୁ ଆରାମ ଲାଗିବ ଓ ତୁମକୁ ବି ଭଲ ଲାଗିବ ।

ମଶାରୀ ଭିତରେ ମଶା ରହିପାରୁଛି । ତକିଆରେ ଛାରପୋକ ରହିପାରୁଛି । ବିଛଣା ତଳେ ପିମ୍ପୁଡ଼ି ମନ୍ଦା କରି ତାହାର ଘର ଦୁଆର କରିପାରୁଛି । ରାସକେଲ୍ ତୁମର ଝିଅ, ପୁଅ, ଓ ସ୍ତ୍ରୀ ଠାରୁ ବଡ ନୁହେଁ କ'ଣ ପାଇଁ ?

ମଶା, ଛାରପୋକକୁ ନିପାତ କରିପାରିଲ ନାହିଁ । କାନ୍ଥ ଉପରର ଅଳନ୍ଧୁକୁ ଝାଡ଼ିବ କାହିଁକି ? ଭିକାରୀକୁ ଭିକ ଦେଇପାରିଲ ନାହିଁ । ତେବେ ରାସକେଲ୍‌ର ଚିକିତ୍ସା କଲ କ'ଣ ପାଇଁ ?

ପିଲାର ସ୍କୁଲ ଦରମା ଦେବାକୁ ଟଙ୍କା ନ ଥିଲା । ସ୍ତ୍ରୀର ସିନେମା ଟିକଟ ପାଇଁ ପଇସା ମିଳିଲା । ନିଜର ଜଳଖିଆ ପାଇଁ ସୁବିଧା ହେଲା ନାହିଁ । କିନ୍ତୁ ରାସକେଲର୍ ରିକ୍ସା ଭଡ଼ା ଠିକ୍ ଦିଆହେଇପାରିଲା ।

ସଂସାରର ହାଟରେ ଅସଂଖ୍ୟ କିଣିବା ଜିନିଷ ପାଇଁ କିଏ କାହାକୁ ବାଛିବ ସେକଥା ଦୋକାନୀ ଜାଣେ ନାହିଁ । ଗରାଖ ବି ଜାଣେ ନାହିଁ ।

ସେମିତି ଏଇ ସଂସାରରେ କିଏ କାହାକୁ କେତେ ମୂଲ ଦେଇ କେବେ କିଣିବ ସେକଥା ଈଶ୍ୱର ଜାଣନ୍ତି ନାହିଁ କି ମଣିଷ ଜାଣେ ନାହିଁ । କେଉଁ କୁକୁର, ବିରାଡ଼ି, କାଉ, ଚଟିଆ, ପାରା, ଝିଟିପିଟି, ବେଙ୍ଗ, ସାପ, ବିଚ୍ଛା, ପିମ୍ପୁଡ଼ି କାହା ଘରେ କେତେବେଳେ ଦେଖା ଦେବେ ଓ କେଇଦିନ କ'ଣ ପାଇଁ ଦେଖା ଦେବେ ସେକଥା ଆସିଲାବାଲା ଓ ରଖିବାବାଲା ଜାଣେ ନାହିଁ ।

ଏଇ ଯେଉଁ ଟିକିକ ତମେ, ମୁଁ ଓ ଅନ୍ୟମାନେ ଆଗରୁ ଠଉରାଇପାରୁ ନାହିଁ ତାକୁ ଆମେ କହୁ ଅଦୃଷ୍ଟ । ଏଇ ଅଦୃଷ୍ଟକୁ ଆମେ କହୁ ଈଶ୍ୱର । ଏଇ ଈଶ୍ୱରଙ୍କୁ ଆମେ ବନ୍ଦନା କରିବା ଆରମ୍ଭ କରିଦେଉ । ଯିଏ ଯେତେ ଅଧିକ ଏଇ ବନ୍ଦନା କରି-ପାରିଲା ସେ ହେଇଯାଏ ସେତେବଡ଼ ମହାତ୍ମା ।

କିନ୍ତୁ ସମସ୍ତେ ଏଇ ରାସକେଲ୍ ଶ୍ରେଣୀର ।

ରାସକେଲ୍ ଲାଙ୍ଗୁଡ଼ ହଲାଏ । ଆମେ ବି ଲାଙ୍ଗୁଡ଼ ହଲାଉ । ଲାଙ୍ଗୁଡ଼ ହଲାଇଲେ ସେବା ଯତ୍ନ ମିଳେ । ଦରମା ଓ ଚିକ୍‌କଣ ପଦାର୍ଥ ମିଳେ । ସେମିତି ଈଶ୍ୱରଙ୍କ ପାଖରେ ବେକ ଭାଙ୍ଗି, ଗୋଡ଼ ଭାଙ୍ଗି ଠିଆ ହେଲେ ସେ ବି ସେମିତି ମନୋରମା ଖାଦ୍ୟ,

http://oaob.nitrkl.ac.in

ମନମଣା ଧନ, କଲ୍ପନା ସୃଜଣୀ ଦରବ ଦିଅନ୍ତି । ଦେଇ ଓ ଦିଆଇ ପାରିଲେ ସେ ହୋଇଯା'ନ୍ତି ବଡ । ଉଚ୍ଚକୁ ଡେଇଁପାରୁଥିବା ମାଙ୍କଡ ପରି ।

ଦାନର ପରିମାଣ ହେଉଛି ଦାତାର ମାପକାଠି । ପରୀକ୍ଷାର ନମ୍ବର ହେଉଛି ପାଠ ପିଲାର ମେଧାର ମାପକାଠି । ଦରମାର ପରିମାଣ ହେଉଛି ନକର ଚାକରର ଗୁରୁତ୍ୱର ମାପକାଠି । ଠିକ୍ ସେମିତି ମନ୍ତ୍ରୀ ପଦ ହେଉଛି ବିଧାନସଭା ଓ ଲୋକସଭା ସଭ୍ୟ ପଦର ଓଜନର ମାପ ।

ସମସ୍ତେ କୁକୁର । ସମସ୍ତେ ରାସକେଲ୍ ପରି କୁକୁର । ସମସ୍ତେ ରାସକେଲ୍‌ର ମାଲିକ ପରି ରାସକେଲ୍ ଓ ମଣିଷ । ଚାଟଶାଳୀରୁ ବିଶ୍ୱବିଦ୍ୟାଳୟ ଯାଏ ସମସ୍ତେ ପାଠ ପିଲ—ସବୁଗୁଡ଼ିକ ଶିକ୍ଷାୟତନ । ସବୁଠାରେ ଗୁରୁଶିଷ୍ୟ—ବଡ ଓ ସାନମାନ । ସବୁଠାରେ ଶିକ୍ଷାସମାନ । ସବୁଠାରେ ମୂଲ ସମାନ ।

ମଶାଣିରେ ମଣିଷ ସମାନ । ମଶାଣିରେ ମଣିଷ ଓ ଇତର ପ୍ରାଣୀଙ୍କର ମଡ଼ା ସମାନ । କଚେରୀରେ ରାଜା ଓ ପ୍ରଜା ସମାନ । ରେଲ ମଟର ଗାଡ଼ିରେ ଯାତ୍ରୀ ସମାନ । ସମସ୍ତେ ସମସ୍ତଙ୍କ ସାଙ୍ଗରେ ସମାନ ।

ରାସକେଲ୍ ଓ ଆମେ ସମାନ । ରାସକେଲ୍‌ର ଅଖା ଓ ଆମର ରେକେଇ ସମାନ । ରାସକେଲ୍‌ର ଓ ଆମର ଭୋକ ଓ ନିଦ ସମାନ । କିନ୍ତୁ ରାସକେଲ୍ ଆମଠାରୁ ବଡ । ଆମେ ତାହାର ଖିଜମତ୍ କରୁ ଓ ରାସକେଲ୍ ଖାଲି ଲାଙ୍ଗୁଡ଼ ହଲାଏ ।

ଲାଙ୍ଗୁଡ଼ ନ ହଲାଇଲେ ଆମେ ତାହାର ନିଦ ଭାଙ୍ଗି ତାକୁ ଚେତ୍ କରୁ । ସେମିତି ଆମେ ଲାଙ୍ଗୁଡ଼ ହଲାଇବାରେ ହେଳା କଲେ ଉପରେ ଠାକୁର ଆମକୁ ମାଡ଼ କ ଭୋଗ ଦେଇ ଆମକୁ ଚେତ୍ କରନ୍ତି ।

ସେଥିପାଇଁ ରାସକେଲ୍ ପୂଜା ପାଇଲା ।

ଶୁଣିଲେ ହସ ଲାଗିବ ଯେ ମାଟି ବାଲି ବିଛଣାର ଗୋଟିଏ ଜୀବ, ତମ ଆମ ପରି ଲୋକର ସମ ସରସା ।

ଏମିତି ଭାବିବାର ଶକ୍ତିକୁ କୁହାଯାଏ ସମଭାବ ଓ ଦର୍ଶନ । ନିଜ ଓ ପର, ଇତର ଓ ମଣିଷ ଆଉ ଠାକୁର ଓ ପଥରକୁ ଏକା ଆଖିରେ ଦେଖିବାର ଉତ୍ସାହ ଓ ଶକ୍ତି ହେଉଛି ଧର୍ମ ଭାବନା

http://oaob.nitrkl.ac.in

ସେଥିପାଇଁ ମୁନିଋଷି ହରିଣ ପୋଷୁଥିଲେ । ସମସ୍ତେ ଗାଈ ପୋଷନ୍ତି । ଶ୍ରେଷ୍ଠ ବାବାଜୀ ନେଉଳଟାଏ ନ ହେଲେ ନେପାଳୀ ମୂଷାଟାଏ ପୋଷେ । ପ୍ରବଳ ପ୍ରତାପୀ ଲୋକ ବଦଳରେ ବାଘଛୁଆଟାଏ ପୋଷନ୍ତି ।

ପୋଷା ଜୀବ ହେଉଛି ମଣିଷର ମାପକାଠି ଓ ତରାଜୁ ।

ଯିଏ କାହାରିକୁ ପୋଷେ ନାହିଁ ସେ ହେଉଛି ଅତ୍ୟନ୍ତ ତଳୁଆ ଜୀବ—ମାଟି ଉପରର ଝିଣ୍ଟିକା ପରି । ଝିଣ୍ଟିକା କାହାକୁ ପୋଷେ ନାହିଁ । ଝିଣ୍ଟିକାକୁ କେହୁ-ପୋଷନ୍ତି ନାହିଁ । ସମସ୍ତେ ତାଙ୍କୁ ଦୂରଦୂର କରି ଧ୍ୱଂସ କରନ୍ତି ।

କିନ୍ତୁ ରୀସକେଲ୍ ପରି ଶ୍ରେଷ୍ଠ କୁକୁରକୁ ଜୀଆଁଇ ରଖାଯାଏ । ରୀସକେଲ୍ ପରି ଅସମର୍ଥ ମଣିଷକୁ ଲାଳିପାଳି ରଖାଯାଏ ସେ ମଣିଷ ହେବ ବୋଲି ।

ମଣିଷ ହୁଅନ୍ତି କେଇଜଣ ?

କିନ୍ତୁ ରୀସକେଲ୍ ପରି କୁକୁର ନ ହୁଏ କେଉଁଠି ? ମଣିଷ ଛଡ଼ା ଆଉ କେଉଁ ଜୀବ ତାହାର ଜୀବନରେ ସେଇ ଜୀବଟିଏ ନ ହୋଇ ରହିପାରିଛି କି ?

କେବେ ନୁହେଁ ।

ଦୁଇ କିସମର ପଦାର୍ଥ ରଦ୍ଦ ହୋଇଯାନ୍ତି—ଗୋଟାଏ ହେଲା ମଣିଷ । ଆରଟି ହେଲା ଠାକୁର । ସେଇ ଦୁଇ କିସମ ବଡ ହୁଅନ୍ତି । ଅଧିକ ବଢି ନ ପାରିଲେ ସେଇଠି ରହି ନ ଯାଇ ଶ୍ରେଷ୍ଠ ହୋଇଯାଏ । ପୂଜା ପାଇ ଆସୁଥିବା ଠାକୁର ଅପୂଜା ଠାକୁର ହୋଇଯାନ୍ତି । କିନ୍ତୁ କୁକୁର, ବିଲେଇ, ଛେଳି, ମେଣ୍ଢା, ତୋତା, ମଇନା, ଧଳା ମୂଷା ଓ ନେଉଳ ଏପରିକି ନାଗ ଅହିରାଜ ତଳକୁ କେବେହେଲେ ଖସନ୍ତି ନାହିଁ ।

ଈଶ୍ୱର ଦେଖାଇ ଦିଅନ୍ତି ଯେ ଇତର ପ୍ରାଣୀ ମଣିଷଠାରୁ ବଡ଼ ।

ଏମିତି ସମସ୍ତେ କେହି କାହାରିଠାରୁ ବଡ ନୁହନ୍ତି ଅବା ସାନ ନୁହନ୍ତି । ସମସ୍ତେ ମାପ ବଟକରାର ଗୃକର । ମଣିଷର ତରାଜୁ ହେଲା ତାହାର ଧାରଣା, ତତ୍ତ୍ୱ ଓ ଦର୍ଶନ—ଏଗୁଡ଼ିକ ହେଉଛି ପବନ ଓ ଭେଳିକି । ତେଣୁ ମାପ ଭୁଲଭାଲ ହୋଇଯାଏ ।

ଆକାଶ ଓ ପୃଥିବୀ ସମାନ ହୋଇଯାନ୍ତି । ସେମିତି ହୁଏ ସ୍ୱର୍ଗ ଓ ମର୍ତ୍ତ୍ୟ, ମିଠା ଆଉ ପିତା, ରାଗ ଆଉ ଖଟା ଓ ଅନ୍ଧାର ଓ ଆଲୁଅ ।

http://oaob.nitrkl.ac.in

କାରଣ ପଦାର୍ଥର ଗୁଣ ହେଉଛି ପ୍ରଥମ ପ୍ରହେଳିକା । ଗୁଣ ନେଇ ପଦାର୍ଥର ସୃଷ୍ଟି ଅବା ପଦାର୍ଥରୁ ଗୁଣର ସୃଷ୍ଟି—ଏହି ପ୍ରଶ୍ନର ଉତ୍ତର ମିଳିପାରୁ ନାହିଁ ।

ସୃଷ୍ଟିର ଆରମ୍ଭରୁ ଓ ଆମର ହେତୁ ପାଇଲା ଦିନରୁ ଆମେ ଏଇ ଗୋଟିଏ ପ୍ରଶ୍ନ ବା ସନ୍ଦେହର ନିର୍ଭୁଲ ଉତ୍ତର ଖୋଜି ନିଜକୁ ଓ ଠାକୁରଙ୍କୁ ପଚାରୁଛୁ ।

କେହି ଏହାର ଜବାବ ଠିକ୍ ଭାବରେ ଦେଲେ ନାହିଁ, ଆଉ ମଧ୍ୟ ଗ୍ରହଣ କଲେ ନାହିଁ ।

ପବନକୁ ମାପିହୁଏ । କିନ୍ତୁ ଗୁଣକୁ ମାପି ହୁଏ ନାହିଁ । ଏହି ମୂଲ୍ୟାୟନ ହେଉଛି ଦ୍ୱିତୀୟ ପ୍ରହେଳିକା ।

ଏଇ ଦୁଇଟି ପ୍ରହେଳିକାକୁ ଏକାଠି କରି ଆମେ କହୁ ସଂସାରର ମାୟା ଓ ଈଶ୍ୱରଙ୍କର ଲୀଳା ।

ବୁଝି ନ ପାରିଲେ ମୁଣ୍ଡ ଖରାପ ହୋଇଯାଏ । ଯିଏ ଯାହା ବୁଝି ନ ପାରିଲା ସେଇ ପ୍ରସଙ୍ଗରେ ସିଏ ପାଗଳ । ଆମେ ପିମ୍ପୁଡ଼ି, ମହୁମାଛି, ଚୋର, ତସ୍କର, ସତୀ, ବେଶ୍ୟା, ଚଲ, ଛନ୍ଦାଣ ସମସ୍ତଙ୍କୁ ଲକ୍ଷ୍ୟ କଲୁ ।

ଏଇଥିରୁ ସାର ମିଳିଥାଏ । ସେଇଥିପାଇଁ ଗ୍ରସକେଲ୍‌ର ଜୀବନ ଏତେ ମୂଲ୍ୟବାନ୍ ।

କୁକୁର ଛୁଆ ବୁଢା ମଣିଷକୁ ବୁଝାଇ ଦେଉଥିଲା ଯେ ବାହାରେ ବଣବୁଦା ପାଖରେ ଜନ୍ମ ପାଇ ମଧ୍ୟ ସେ ବଡ ଡାକ୍ତରଖାନାର ହସ୍ପିଟାଲ ନେଇ ଜନ୍ମ ପାଇଥିବା ମଣିଷଠାରୁ ଉପରେ ।

ପାଣି ଉପରୁ ତଳକୁ ଗଡେ । ସ୍ନେହ ମମତା ଗଡ଼େ ଉପରୁ ତଳକୁ । କିନ୍ତୁ ସବୁ ଆଧାର ଓ ପାତ୍ର ହେଉଛନ୍ତି ଗଭୀର । ତଳ ତାହାର ଅତଳ ଗର୍ଭରେ ଧରି ରଖେ ଉପର ମୁଣ୍ଡର ଓ ଉପରବାଲାର ସମସ୍ତ ଗୁଣ ।

ନାଲମଡ଼ା ଶେଷମୁଣ୍ଡ ବଳରେ ଆଉ ସାର ଲଗାଇବା ଦରକାର ହୁଏ ନାହିଁ ।

ଯେମିତି ଗ୍ରସକେଲ୍ ପରି ଶ୍ରେଷ୍ଠ କୁକୁର ଛୁଆଟିଏ ଭଲ ପାଇପାରିଲେ ଏଇ ସଂସାରର ଅନେକ ସନ୍ଦେହର ମୀମାଂସା ହୋଇଯାଏ ।

http://oaob.nitrkl.ac.in

ଶ୍ରେଷ୍ଠ ଗ୍ରେସକେଲ୍ ବିଷ ଖାଇ ଦେଇ ମଣିଷର ହୃଦୟର ମାପ ନେଇଗଲା । ସେ ଦିନ ପଇସା ନ ଥାଏ । ଗ୍ରେସକେଲ୍ ପାଇଁ ଧାର ହେଲା ଓ ଔଷଧ ଆସିଲା । ରାତି ପାହିଲେ ଡାକ୍ତର ପାଖକୁ ଯିବ ବୋଲି ଟଙ୍କାର ବ୍ୟବସ୍ଥା ହେଲା । ରାତିରେ ସେ ମରିଯିବ କି ପାଗଳ ହୋଇଯିବ ସେଥିପାଇଁ ସମସ୍ତଙ୍କୁ ଚେତେଇ କରି ରଖିଲି ।

କାରଣ ଗ୍ରେସକେଲ୍ ପାଇଁ ମମତା ଅଛି ।

ଡାକ୍ତରଖାନାରୁ ଫେରିଲା ପରେ ସେ ସମସ୍ତଙ୍କୁ କୃତାର୍ଥ କଲା । ମଣିଷ ତାହାର ନିଜ ଲୋକଙ୍କ ପାଇଁ ଏଇ ଦରଦ ଟାଣିପାରେ ନାହିଁ ।

କିଏ କହୁଛି ଯେ ମୂକ ଏଇ ସଂସାର ପାଇଁ ଅସମର୍ଥ ? କିଏ କହୁଛି ଯେ ଅସମର୍ଥ ଏଇ ସଂସାରରେ ବଞ୍ଚିପାରିବ ନାହିଁ ? କିଏ କହୁଛି ଯେ ଜଗତର ନାଥ ବିଦ୍ୟମାନ ଥିଲାବେଳେ ଗଛ ମୂଳର ସିନ୍ଦୁର ମଖା ଠାକୁର ଭୋଗ ପାଇବେ ନାହିଁ ?

ଏକା ଗ୍ରେସକେଲ୍ ତାହାର ଚୈତନ୍ୟ ଶୂନ୍ୟ ଜୀବନରେ ବଡ଼ ବଡ଼ ପ୍ରଶ୍ନର ଉତ୍ତର ଦେଇଥିଲା । ସେଥିପାଇଁ ସେ ଧର୍ମଶାସ୍ତ୍ର ଓ ନୀତିଶାସ୍ତ୍ର ଶୁଣାଇ ନ ଥିଲା ।

ତାହାର ଶିଖେଇବାର ଉପକରଣ ହେଲା ମାତ୍ର ଗୋଟିଏ ହୃଦୟ—ହେଲା ଏବେ ସିଏ କୁକୁର ଛୁଆର ହୃଦୟ ।

ମୋର ଜେଜାମାର ହୃଦୟଠାରୁ ଅଧିକ ବଳବାନ୍ । ଜେଜାମାର ଅପାଠୋଇ ହୃଦୟ ମହିଳା କଲେଜର ଅଧ୍ୟକ୍ଷାଙ୍କ ହୃଦୟଠାରୁ ଅଧିକ ମୂଲ୍ୟବାନ୍ । କାରଣ ପୋଥି-ପାଠର ଜ୍ଞାନ ହୃଦୟକୁ ଶ୍ରେଷ୍ଠ କରିଦିଏ ।

ଶ୍ରେଷ୍ଠ ହୃଦୟର ମଣିଷ ସଂସାରର ଗହଳରେ ଭଲକୁ ଚାଲିଯାଏ ।

ଏଇ ଗ୍ରେସକେଲ୍ ପୁଣି ତାହାର ବୁଲାବୁଲି ଆରମ୍ଭ କରେ ରାତି ଦଶଟା ପରେ । ସେତେବେଳେ ତାହାର ମାଆ ତାକୁ ନେଇ ତାହା ପ୍ରାଣୀ ଜଗତର ଅନେକ ବିଧି-ବିଧାନ ଶିଖାଏ ।

ଏଣେ ନନ୍ଦୁଆ ମାଲିକର ନିଦଭଙ୍ଗା କାନ ସତେ ଯେମିତି ରେଡ଼ିଓର ତରଙ୍ଗକୁ ଧରିନେଲା ପରି ଗୁହାଁ ବସିଥାଏ । ଗ୍ରେସକେଲ୍‌ର ପାଟି ଶୁଣିଲେ ସମସ୍ତେ ନିଦରୁ ଉଠନ୍ତି ।

http://oaob.nitrkl.ac.in

ତାହାର ଏଇ ଶ୍ରେଷ୍ଠ କୁଇଁ କୁଇଁ ଦାମିକା ଆଲାର୍ମ ଘଣ୍ଟାର ଶବ୍ଦଠାରୁ ଅଧିକ ଶବ୍ଦମୟ ।

ହୃଦୟର ଏଇ ଆକର୍ଷଣ ହେଉଛି ସଂସାରର ଅଜଣା ତରଙ୍ଗ । ସିଏ ନ ଥିବା ଲୋକଙ୍କୁ ଦୂରରୁ ଦେଖିପାରେ ଓ ତାହାର କଥା ଶୁଣିପାରେ ।

ଏହାକୁ କୁହାଯାଏ ଚେତନା । ଏହି ଚେତନା ଜଡ ପଦାର୍ଥର ନଥାଏ ।

ରୟକେଲ୍ ଆସିଗଲେ ନିଦ ତାହାର ଉପଯୁକ୍ତ ସ୍ଥାନ ନିଏ । ପହ୍ଣ୍ଡ ଭାଙ୍ଗିବାକୁ ସକାଳର କାମ ବିଶେଷ ସାହାଯ୍ୟ କରେ ନାହିଁ ।

ରୟକେଲ୍ ପନ୍ଦରଦିନ ଗାଧୋଇବ । ଗାଧୋଇବା ଦରକାର । ନିଜର ପରି-ସରରେ ଯତ୍ନରେ ରହିବା ଦରକାର ।

କିନ୍ତୁ ଔଷଧ ଖାଇବାକୁ ରୟକେଲ୍ର ବହୁତ ଆପତ୍ତି । ମଣିଷ ଯେତେ ଔଷଧ ଖାଇ ଦେଇପାରେ ପଶୁ ତାହାର କାଣିଚାଏ ବି ପାରେ ନାହିଁ ।

ସ୍ତ୍ରୀ ଔଷଧ ଖାଇବାକୁ ଖୁସାମଦ୍ ଖୋଜନ୍ତି । ପିଲାମାନେ ଔଷଧ ଖାଇବା ଆଗରୁ ଗେହ୍ଲା ହୁଅନ୍ତି । କିନ୍ତୁ ଧମକ ଚମକ ନ ହେଲେ ରୟକେଲ୍ ଔଷଧ ଖାଏ ନାହିଁ ।

ସେ ଠିକ୍ ଆମର ମଣିଷ ପିଲାପରି ।

ପିଲା ସ୍କୁଲ କଲେଜକୁ ଯାଏ ନାହିଁ ନିଜେ ଶିଖି ମଣିଷ ହେବା ପାଇଁ । ସେ ଯାଇଛି ତାହାର ବାପା ଭାଇ, ମାଆ ଓ ଭଉଣୀଙ୍କୁ ଖୁସି କରିବା ପାଇଁ ।

ତେଣୁ ସେ ଫେଲ ହୋଇପାରେ । ତୃତୀୟ ଶ୍ରେଣୀରେ ତିନି ସାଲ ପରେ ପାସ୍ କରିପାରେ । ବର୍ଷ ତମାମ ଭୁଲକେଲ ପରୀକ୍ଷାଫଳ ବାହାରିଲା ପରେ ଆମର ପିଲା ଏନ୍ତ୍ରେକ୍ସ ବିଷ ଅବା ରେଲ ଲାଇନକୁ ପସନ୍ଦ କରିପାରନ୍ତି ।

କାରଣ ଏତିକି କରି ସେମାନେ ତାଙ୍କର ପ୍ରିୟଜନଙ୍କୁ ଚିରଦିନ ମନେ ରଖାଇଲା ପରି ପାନେ ଔଷଧ ଦେଇଦେବ ।

କିନ୍ତୁ ରୟକେଲ୍ ସେ କଥା ଭାବେ ନାହିଁ । ନିଜର ମାଲିକଙ୍କୁ ମନହଣା ଦୁଃଖ ଦେବାକୁ ସେ କେବେହେଲେ ମନ କରେ ନାହିଁ ।

http://oaob.nitrkl.ac.in

ମଣିଷର ବିବେକ ଓ ଜନ୍ତୁର ବୁଦ୍ଧି ନାହିଁ । କୁକୁର ଛୁଆ ତାହାଠାରୁ ବହୁତ ବଡ଼ ।

ସ୍ପସକେଲ୍ କୁକୁର ଛୁଆ ଓ ସ୍ପସକେଲ୍ ମାଲିକର ମଣିଷ ଛୁଆ ଭିତରେ ଆକାଶ ପାତାଳ ଫରକ୍ । ଦୁହେଁ ସ୍ପସକେଲ୍ ସତ ।

କିନ୍ତୁ ମଣିଷ ଛୁଆ ହେଉଛି ପ୍ରକୃତରେ ଅବିବେକୀ ସ୍ପସକେଲ୍ । କୁକୁର ଛୁଆ ହେଉଛି ବିବେକୀ ସ୍ପସକେଲ୍ ।

ଲୋକେ ଜାଣିବାକୁ ସ୍ପେକେଲ୍ ଖଟରେ ଶୋଇପାରିବ ନାହିଁ କିମ୍ବା କୋଠରୀ ଭିତରକୁ ଆସିପାରିବ ନାହିଁ ।

ପାଖ ଘରେ ସ୍ପସକେଲ୍ ପରି କୁକୁର ଛୁଆ ଅଧିକ ଯତ୍ନରେ ଅଛି । ତାହାର ଦେହର ଲୋମ ଲମ୍ବା ଓ ଧଳା । ବାପ ମାଆ ଥିଲେ ସେମିତି ଉଚ୍ଚ ସ୍ତରର ।

ଆମର ମନ୍ତ୍ରୀ ଓ କଲେକ୍ଟରଙ୍କ ପିଲା ପରି ସେମାନେ ଯେତେ ଯାହା ଭୁଲ କଲେ ବି ଦୋଷ ବାହାରିପାରେ ନାହିଁ । ତାଙ୍କର ଧଳା ଲମ୍ବା ଲୋମ ସବୁ ଲୁଚେଇ ଦିଏ ।

ଖାଲି ଦୋଷ ଲୁଚୁଏ ନାହିଁ । ଗୁଣରେ ଆକାର ପ୍ରକାରକୁ ମଧ୍ୟ ବଢେଇ ଦିଏ ।

ଠାକୁରଙ୍କର ଦୋଷ ନାହିଁ । ପ୍ରିନ୍‌ସିପାଲ୍ ଓ ଶିକ୍ଷା ସଚିବଙ୍କର ଦୋଷ ନାହିଁ । ବାପ ମାଆଙ୍କର ଦୋଷ ନାହିଁ । ସେମିତି ଭଲ ଜାତିଆ କୁକୁରର ଦୋଷ ନାହିଁ । ଖାଲି ରହିଛି ଗୁଣ ।

ତାହାର ନାଁ ଦିଆହୋଇଥାଏ—ଲାଇଟ୍ । ଲାଇଟ୍ ମଜାରେ ଥାଏ ।

ଲାଇଟ୍ ଭଲ ଖାଏ । ସାବୁନ୍ ଲଗାଇ ଗାଧୁଆଏ । ଦିନକୁ ତିନିଥର ଘରୁ ବାହାରି ବୁଲିବାକୁ ଯାଏ । ଖଟ ଉପରେ ଶୁଏ । ମଣିଷ ପାଖରେ ରହିବା ଅଭ୍ୟାସ କରି ନେଇଛି ।

ଆରମ୍ଭ ହୋଇଥିଲା ଗୋଡ ପାଖରେ ରଖା ହେବା ପାଇଁ । ତା'ପରେ ଲାଇଟ୍‌ର ଉନ୍ନତି ହେଲା ସେ କୋଡ଼ ପାଖରେ ଶୁଏ ।

ବିଜୁଳି ପଙ୍ଖା ନ ବୁଲିଲେ ସେ ଶୋଇପାରେ ନାହିଁ, ଆମର ପିଲା ଘର ମାଷ୍ଟ୍ର ଓ ପଙ୍ଖା ବନ୍ଧ ନ ମିଳିଲେ ପାଠପଢ଼ା ବନ୍ଦ କରି ବଜାରରେ ବଗୁଲିଆମି ଖୋଜିଲା ପରି ।

ଏବେ ବିଜୁଳି ସଙ୍କଟ ଲାଗି ରହୁଛି । ଅନେକ ସମୟରେ ବିଜୁଳି ଲାଇନ ଭିତରେ ବିଜୁଳି ଆସୁ ନାହିଁ । ରେଲ ଲାଇନ ପରି ପଡ଼ି ରହୁଛି ।

ଏମିତି ସମୟରେ ଲାଇଟ୍ ବୁଝାଇ ଦିଏ ସେ କେତେ ଦାମିକା ଜୀବନ । ମାଲିକର ସୁବିଧା ଅସୁବିଧାରେ ଲାଇଟର କିଛି ନାହିଁ ।

ଲାଇଟ୍ କେମିତି ବିନା ପଙ୍ଖାରେ ଶୋଇବ ? ପୁଅ, ଝିଅ କେମିତି ରେଡ଼ିଓ, ଟେଲିଭିଜନ ଓ ଗୀତ କାସେଟ୍ ନ ଥିଲେ ବଞ୍ଚିବେ ? ସେମାନେ ହୁଏତ ଅମଣିଷ ହେବେ । କିନ୍ତୁ ଅମଣିଷ ହୋଇ ବଞ୍ଚି ରହିବା ପାଇଁ ସିନେମା, ନାଚ, ଗୀତ ଦରକାର ।

ଅସୁବିଧା ହେଲେ ସେମାନେ ଜୋରରେ କହନ୍ତି—ତୁମେ ଯଦି ପିଲାଙ୍କର କିଛି ଅସୁବିଧାକୁ ସୁବିଧା କରି ନ ପାରିବ ତେବେ ସେମାନଙ୍କୁ ଏଇ ମାଟିକୁ ଆଣିଲ କାହିଁକି ? ନିଜର ଖୁସି ପାଇଁ ହୁଏତ କିଛି କରିଛ । ଜୋରିମାନା ଦିଅ । ଅନୁତାପ କର । ଆଖିରୁ ପାଣି ଗଡ଼ାଅ । ପୁଅ ଝିଅ ବିପଥରେ ଗଲେ ତୁମେ ସେତିକ ତାରିଫ୍ କର । କିଛି କରି ନ ପାରିଲେ ଅନାହାରରେ ମରିଯାଇପାର ।

ସେଇ କଥା କୁକୁର ଛୁଆ ତାହାର ମାଲିକକୁ କହେ । ଘେଉକେଉ୍ ତାହାର ପୋଷିଲା ଖାଉନ୍ଦଙ୍କୁ ଜଣାଇ ଦିଏ । ଲାଇଟ୍ ତାହାର ଯୋଜଦାର ମାଲିକକୁ ବୁଝାଇ ଦେଉଥିଲା ।

ରାତିରେ ଅନ୍ଧାର । ବିଜୁଳି ବିଭାଗ ବିଜୁଳିକୁ ସଞ୍ଚିବା ପାଇଁ ରାତିରେ ଲାଇନ୍ କାଟିଦେଉଛି । ଲାଇଟକୁ ଧରି ତାହାର ମାଲିକ ଘର ଓ ବାହାର ହେଉଛି । ଲାଇଟ୍‌କୁ ନିଦ ନ ହେଲେ ସେ ଶୋଇବ କେମିତି ? ହଠାତ୍ ଲାଇଟ୍‌କୁ ଘରରୁ ତଡ଼ିଦେଲେ ଲାଇଟ୍ ଅବା ଯିବ କାହିଁକି ?

ବନ୍ଦୋବସ୍ତ ବିଭାଗର ଜବର ଦଖଲରେ ସ୍ୱତ୍ତ୍ୱ ଉଠି ଆସିଲା ପରି ଲାଇଟ୍ କୁକୁର ଛୁଆର କେଇ ଦିନର ସ୍ନେହ ଶ୍ରଦ୍ଧାର ଦାବୀ ଜମି ଉଠିଲାଣି ।

ଲାଇଟର ମାଲିକଙ୍କର ଦେହ ଖରାପ । ତାଙ୍କୁ ଡାକ୍ତର ସାବଧାନ କରିଦେଇଛି ଯେ ସେ ଉପଯୁକ୍ତ ପରିମାଣରେ ବିଶ୍ରାମ ନେବେ ଓ ବ୍ୟସ୍ତ ହେବେ ନାହିଁ ।

ଏସବୁ ଜଟିଳ କଥା ଲାଇଟ୍ ବୁଝେ ନାହିଁ । ଲାଇଟର ସ୍ତ୍ରୀ ପିଲା ବୁଝନ୍ତି ନାହିଁ । ଯେତେବେଳେ ଠାକୁରଙ୍କର ମନ୍ତ୍ର ଜପିଲେ ସେ ବି ଶୁଣିବାକୁ ନାରାଜ ।

http://oaob.nitrkl.ac.in

ଗୋସ୍ୱାଙ୍କୁ, ପାଠୋଇଙ୍କୁ, ଧନୀ ଦୁଲାଲୀଙ୍କୁ ଭଲ ପାଇ ଲଣ୍ଡଭଣ୍ଡ ହେବା ଯାହା, ସ୍ୱପକେଲ୍ କ ଲାଇଟ୍‌କୁ ଆଦରିବା ଏକା କଥା ।

ଲାଇଟ୍‌ର ମାଲିକଙ୍କର ମନେ ପଡ଼ୁଥିଲା ପଚିଶ ବର୍ଷ ତଳର କଥା ।

ତାଙ୍କୁ ଯେତେବେଳେ ପଢୁଆ ପିଲାର ଗଜା ବୟସ ସେତେବେଳେ ତାଙ୍କୁ ଧରିଥିଲା ଗୋଟିଏ ଅସୁରୁଣୀ । ଅସୁରୁଣୀ ଚାରିଆଡ଼େ ବୁଲେ ।

ଦିନେ ଅସୁରୁଣୀ ଜଣାଇଲା ଯେ ସେ ମାଆ ହେବାକୁ ଯାଉଛି । ଆଉ ସେ ପିଲା ହେଉଛି ଏଇ ଗଜା ଟୋକାର ।

—ଆରେ କ'ଣ ନ୍ୟାୟ ଚାଲିଗଲା ଏଇ ସଂସାରରୁ ? ମୁଁ ହେଲି ବାପ ?

—ଆଉ ? ଆଉ କିଏ ? ମୁଁ ସେମିତି ନୁହେଁ । ମତେ ଭାବିଛ କି ମୁଁ ଏଠି ସେଠି ଲଟପଟ ହୁଏ ।

ଥକା ହୋଇ ଚାହିଁ ରହିବା ଛଡ଼ା ଅନ୍ୟ ଉପାୟ କ'ଣ ଅଛି ?

ଯାହା ନାଁରେ ଅଭିଯୋଗ ଆସେ ସେ ହୋଇଯାଏ ଅଭିଯୁକ୍ତ ? ଶୁଣିବା ଲୋକେ ଧରିନିଅନ୍ତି ଯେ ଅଭିଯୋଗ ସତ । ନ ହେଲେ ଧୂଆଁ ବାହାରିବ କାହିଁକି ? ଏଇ ନିଖିଳ ବିଶ୍ୱର ଅସୁମାରି ଲୋକ ଭିତରେ ଜଣକ ଉପରକୁ ଛିଟା ପଡ଼ିଲା କାହିଁକି ?

ସେତେବେଳେ ଯେତେ ଆତୁରରେ ଭଗବାନଙ୍କୁ ପ୍ରାର୍ଥନା କଲେ ବି ଠାକୁରେ ନ୍ୟାୟ ଦେବାକୁ ଓହ୍ଲାଇ ଆସନ୍ତି ନାହିଁ । ସେ ନ୍ୟାୟାଳୟର ହାକିମଙ୍କ ଘର ।

ମୁଦାଲାକୁ ଖଲାସ କରିଦେବାକୁ ବା ପ୍ରତିବାଦୀକୁ ଜିତାଇବାକୁ ଦଶ ପନ୍ଦର ବର୍ଷ ଲଗାତର ଦରକାର । ପୃଥିବୀରେ ଅଛନ୍ତି ଠାକୁରଙ୍କର ଜୀଅନ୍ତା ପ୍ରତିମା—ତାଙ୍କୁ ଆମେ କହୁ ମାଆ ବାପ । ତାଙ୍କର ପୂଜାରୀ ଚାକର ହେଲେ ଓକିଲ ମୋହରିର । ଚାମୁଣ୍ଡା ହେଲେ ଅମଲା ଓ ଚପରାସି । ସେମିତି ଠାକୁର ବି ରହନ୍ତି ତାଙ୍କର ସେବାକାରୀ ମେଳରେ । ସେବାକାରୀ ଗୁଣ ହେଲା ଠାକୁରଙ୍କର ଗୁଣ ।

ଠାକୁରଙ୍କର ଭୋଗ ଯାହା ହାକିମଙ୍କୁ ଘୁଷ୍ ସେଇଆ । ଦେହରୁ ଚର୍ବି ନ ଶୁଖିବା ଯାଏ ଆମ ସମସ୍ତେ ଲାଗି ରହିଥିବା ଠାକୁରଙ୍କର ମହିମା ଗାଇବାରେ । ଏହାର ଅର୍ଥ ହେଲା ଯେ ହାକିମଙ୍କ ଜରିଆରେ ଠାକୁରେ ସବୁ ତତ୍ତ୍ୱ ନେଉଛନ୍ତି ।

http://oaob.nitrkl.ac.in

ପୃଥିବୀସାରା ଏବେ ଧର୍ମସଙ୍ଗୀତ ଚାଲିଛି ଷ୍ଟେରିଓ, ଟେପ୍, ଟେଲିଭିଜନ ଓ ରେଡିଓରେ । ସମୁଦ୍ରର ଲହଡ଼ି ଗର୍ଜିଲେ ଯେମିତି ସମୁଦ୍ରର ଲାଭକ୍ଷତି ନ ଥାଏ ସେମିତି ଠାକୁରଙ୍କର ଜଣାଣ ଓ ଭଜନରେ ତାଙ୍କର ଅବା ଲାଭ କ'ଣ ?—କ୍ଷତି କ'ଣ ?

ଲାଭକ୍ଷତି ଆମର—ଅମେ ଗାଇବା ବାଲାଙ୍କର ଓ ପାଳିଅଙ୍କର । ବହି ଛପାଇବା, ଲେଖାଇବା, ବଜାବା ଓ ବଜାଇବା ହେଲା ଶିଳ୍ପ । ଏଇ ଶିଳ୍ପ ତାହାର ଦୁନିଆର ବଜାରରେ ମିଶାମିଶି ହୋଇ ଚାଲେ । ଏଇ ବେପାର ଧନ୍ଦାରେ ଠାକୁରଙ୍କର ଯୋଗାଯୋଗ ନାହିଁ ।

କୁକୁରର ସେବାରେ ଈଶ୍ୱର ସେବାର ଫଳ ମିଳେ ନାହିଁ । ମଲ୍ଲୀ, ଗୋଲାପକୁ ରହି ରହି ଶୁଙ୍ଘିଲେ ଅବା କବିତା ଓ ଚିତ୍ରରେ ଲେଖିଲେ ଈଶ୍ୱର ପୂଜା ହୁଏ ନାହିଁ । ବେଟ୍ୟୋ, ବିଟପି, ଖାନଙ୍କୁ ପ୍ରାଣଭରି ପୂଜା କଲେ ସେଥିରେ ଈଶ୍ୱରଙ୍କର ନାଁ ଉଠେ ନାହିଁ ।

ରୋସକେଲ ଓ ଲାଇଟ୍ ପରି କୁକୁରଛୁଆ ଦୁଇଟି ଶିଖାଉଥିଲେ ଜୀବନର ଦର୍ଶନ । ଯେ ଶିଖାଏ ସେଇ ହୁଏ ଗୁରୁ । କୁକୁର ଛୁଆ ଆମର ଗୁରୁ । କ'ଣ ପାଇଁ କେମିତି ନିଜର କରି ପରକୁ ପାଖରେ ରଖାଯାଇପାରେ ସେତିକି ସେମାନେ ଶିଖାଇ ଦିଅନ୍ତି ।

ସବୁଆଡ଼ୁ ସମସ୍ତଙ୍କ ଧନ ନିଜର କରିବା ହେଉଛି ଅମଣିଷପଣିଆ । ସେଥିରୁ ଥୋକେ ଅପରକୁ ଦେବା ହେଉଛି ମଣିଷ ପଣିଆ । କିନ୍ତୁ ନିଜର ପେଟରୁ କାଟି କଷ୍ଟ ସହି ଅନ୍ୟକୁ ଦେବା ହେଉଛି ଦେବତ୍ୱ ।

ଆସ୍ତକର ଲୋକଙ୍କୁ ପ୍ରବୋଧ ଦେଇ ଦାନ କରିବା ହେଉଛି ବେପାର । ନିଜକୁ କ୍ଷତିଗ୍ରସ୍ତ କରି ଦେବା ହେଉଛି ସଦ୍‌ଗୁଣ ।

ରୋସକେଲର ମାଲିକ ନିଜେ ଶାଗ ପେଜ ଖାଇ ରୋସକେଲକୁ ଅଣ୍ଡା, ଦୁଧ ଓ ହାଡ ଦେଇପାରୁଛି କି ନାହିଁ ତାହାର ପରୀକ୍ଷା ରୋସକେଲ ନେଉଥାଏ ।

ନିଜେ କଷ୍ଟ ସହି ରାତି ଅଧରେ ଲାଇଟ୍‌କୁ ପବନ ଖୁଆଇ ଖୁସି କରିବାକୁ ଲାଇଟ୍ ମାଲିକ ବୁଲିପାରୁଛି କି ନାହିଁ ତାହାର ପରୀକ୍ଷା ଲାଇଟ୍ ନେଉଥାଏ ।

ଏଣେ ସ୍ତ୍ରୀ ବାଳକ ସକାଳୁ ରାତିଯାଏ ପଚାରୁଥାନ୍ତି—ଆମ ପାଇଁ ଏତିକି କ'ଣ ସ୍ୱାର୍ଥ ତ୍ୟାଗ ? ଆଉ କାହିଁକି ?

http://oaob.nitrkl.ac.in

ତୁମର ଦରମା ପାଞ୍ଚ ଶହ ଟଙ୍କା । ଚୋରି କଲେ ହୋଇଯିବ ପାଞ୍ଚ ହଜାର । ଚୋରି ନ କରି, ଅପଦସ୍ଥ ନ ହୋଇ ସମସ୍ତେ ଦାତାର ବାହାଦୁରି ନେଇପାରିବେ । କିନ୍ତୁ କଷ୍ଟ ସହି, ବିପଦ ଭିତରକୁ ଡେଇଁ କେତେ ଜଣ ତୁମକୁ ଆଣି ଦେଇପାରିବେ ? ସେପରି ଲୋକ କେତେଜଣ ?

ପଶୁ ସମାଜରେ ଏଇ ନିୟମ ନାହିଁ । ପଶୁ ସମାଜ ବିପଦ ଭିତରେ ଯାଇଆସି ତାହାର ଅସ୍ତିତ୍ୱ ପାଇଁ ଆଧାର ଆଣେ । କିନ୍ତୁ ମଣିଷ ସ୍ୱାର୍ଥପର ହୋଇ କେବଳ ସୁବିଧା ସୁବିଧାରେ ସୁନାମ ଆଦାୟ କରିଦିଏ ।

ମଣିଷ କେତେ ଶ୍ରେଷ୍ଠ ବୁଝିବାକୁ ହେଲେ ଇତର ପ୍ରାଣୀଙ୍କୁ ଦେଖିବା ଦରକାର । ଆକାଶର ଜୁକୁଜୁକିଆ ତାରାଙ୍କୁ ପାଖରେ ଦେଖିଲେ ଆମର ପୃଥିବୀ ଠାରୁ ବଡ଼ ହୋଇଯାଏ । ପଶୁ ସମାଜର କର୍ତ୍ତବ୍ୟ ଜ୍ଞାନ ଓ ଜୀବନ ବିନିମୟରେ କରୁଥିବା ପଶୁର କର୍ତ୍ତବ୍ୟ ମଣିଷର ହୃଦୟର ଦୈନ୍ୟ ଦେଖାଇ ଦିଏ । ଇତର ପ୍ରାଣୀଙ୍କର ଗୁହାରୀ ହେଉଛି ମଣିଷର କାମର ସାର୍ଟିଫିକେଟ୍ । ସେଥିରେ ଦଶେ ଆଗ୍ରହ, ବୈରାଗ୍ୟ ଉଦାସୀନତା ଓ କୃତଜ୍ଞତା ।

ପଶୁର ସେବା ହେଉଛି ପରମାତ୍ମା ଚର୍ଚ୍ଚାର ମାପ ଓ ଓଜନ । ଯିଏ ପଶୁପକ୍ଷୀଙ୍କୁ ଆପଣାର କରିପାରେ ବା କରିପାରିଛି ସେଇ କେବଳ ଅପର ମଣିଷକୁ ଆପଣାର କରି-ପାରିବ ? କାରଣ ପଶୁଠାରୁ ବହୁତ ତଳେ ରହିଛି ମଣିଷ ।

ପଶୁପକ୍ଷୀଙ୍କଠାରୁ ବହୁତ ଉଚ୍ଚରେ ରହିଛି ଗଛଲତା । ସେମାନେ କିଛି ନ ନେଇ ଦେଇପାରନ୍ତି । ସବୁ ଦେଲା ପରେ ବି ଥରେ କହନ୍ତି ନାହିଁ ଯେ ଅନ୍ୟକୁ ଦେଇଛନ୍ତି । ନିଜ ପାଇଁ କିଛି ନ ରଖି ଦେବା ହେଉଛି ବୃକ୍ଷଲତାର ଗୁଣ ।

ତାହା ଉପରେ ରହିଛି ପାହାଡ଼, ପର୍ବତ ଓ ମାଟି । ସେଠି ପ୍ରତୀକ୍ଷା ଅଛି କିନ୍ତୁ, ଆକାଂକ୍ଷା ନାହିଁ । ନିଜର ସେବା ଓ ସାହାଯ୍ୟ ଦେବା ପାଇଁ ଅଭ୍ୟର୍ଥନା ରହିଛି କିନ୍ତୁ, କିଏ କ'ଣ କେତେ କେତେବେଳେ ନେବ କି ନ ନେବ ସେଥିପାଇଁ ଭାବନା ନାହିଁ ।

ଏଇ ସୃଷ୍ଟିରେ ମାଟି—ପଥର, ବୃକ୍ଷଲତା, ପଶୁପକ୍ଷୀ ଓ ମଣିଷ ବୁଦ୍ଧି ଓ ଚେତନା ଦୃଷ୍ଟିରୁ ଆଗ ଓ ପଛ । କିନ୍ତୁ ଉପକାରିତା ଓ ଉପାଦେୟତା ଦୃଷ୍ଟିରୁ ଓଲଟା ପ୍ରକାରରେ ଆଗ ଓ ପଛ ।

ଠିକ୍ ମାର୍ଚ୍ଚିଙ୍ଗ ବେଳର ଏବାଉଟ ଟର୍ଣ୍ଣ ପରି । ଆଗବାଲା ପଛ ହୋଇଯାଏ ଓ ପଛବାଲା ଆଗ ହୋଇଯାଏ ।

http://oaob.nitrkl.ac.in

କିଏ ପେଟ ପାଇଁ ଅନ୍ୟର ନୌକର ହୁଏ । ସେମିତି କିଏ ଛଦ୍ମବେଶ ଧରି ନିଜର ପ୍ରାଣ ରକ୍ଷା କରିବାକୁ ଅବା କିଛି ସାଧନାରେ ସିଦ୍ଧି ଆଣିବାକୁ ଅପରର ନୌକର ହୁଏ । ସେମିତି ନିଜର ଖିଆଲ, ଅଦର୍ଶବାଦ ଓ ସ୍ନେହ ପାଇଁ ଆମେ ଅପରର ନୌକର ହେଉଥାଉ ।

କୁକୁର ଛୁଆ ରାସକେଲ୍ ଓ ଆଉ କୁକୁର ଛୁଆ ଲିଜି ନିଜର ଜୀବନରେ ଦେଖାଇ ଦେଉଥିଲେ ଯେ ଅଜାଡିଆ ପେଟରୁ ବାହାରି ଅପନ୍ତରାରେ ଜନ୍ମ ହୋଇ ନିଜ ପାଇଁ କିଛି ବ୍ୟବସ୍ଥା ନ ଥାଇ ପ୍ରବଳ ଓ ପ୍ରତାପୀ ମଣିଷଙ୍କଠାରୁ ସ୍ନେହ, ଶ୍ରଦ୍ଧା ଓ ସେବା ଆଦାୟ କରିପାରନ୍ତି ।

ଏହାକୁ କୁହାଯାଏ ଈଶ୍ୱରଙ୍କର ମହିମା ଓ ସୃଷ୍ଟିର ତତ୍ତ୍ୱ । ଏଥିରୁ ବୁଝାଯାଏ ଯେ ଗୁଣ ବା ଦୋଷ ଏବଂ ପରିପୂର୍ଣ୍ଣତା ଓ ଅପୂର୍ଣ୍ଣତା ହେଉଛି ମଣିଷର ମନଗଢ଼ା ମୂଲ୍ୟାୟନ ଶବ୍ଦ କେତୋଟି ।

ସଂସାରର ପରିବେଶରେ କି ଜଡ଼ କି ଚେତନ ଅବା କି ଜ୍ଞାନୀ କି ମୂର୍ଖ, କି ଧନୀ କି ଗରିବ ସମସ୍ତେ ସମସ୍ତଙ୍କ ଉପରେ । ଯାହାକୁ ଆମେ କହୁ ସମସ୍ତେ ସମସ୍ତଙ୍କ ସହିତ ସମାନ ।

ମଣିଷର ଜୀବନ କାହାଣୀ ପରି ମୂଲ୍ୟବାନ୍ ମଧ୍ୟ ହେଉଛି ପଶୁର ଜୀବନ କାହାଣୀ ।

ମଣିଷ ଓ ପଶୁର ଔଷଧ ସମାନ । ଖାଦ୍ୟପାନୀୟ ମୋଟାମୋଟି ସମାନ । ରାସକେଲ୍ କେମିତି ବଞ୍ଚିଗଲା ସେଇକଥା ମଧ୍ୟ ଆଲୋଚନା ହୁଏ ।

ରାସକେଲ୍ ବନ୍ଧା ହୋଇଥିବା ଘରକା ପାଖରେ ଚଣ୍ଡୀପାଠ ଟେପ ରେକର୍ଡ଼ରେ ଦୁଇଥର ବାଜିଥିଲା । ରାସକେଲ୍‌ର ଭାଗ୍ୟ ଯେ ସେ ଚଣ୍ଡୀପାଠ ଶୁଣିଲା, ଚଣ୍ଡୀପାଠ ଶୁଣିବାରୁ ରାସକେଲ ବଞ୍ଚିଗଲା ।

କାହା ଲାଗେ ଯେ ଏପରି ଅନୁମାନ ମିଛ । କିନ୍ତୁ ମିଛ ଓ ସତ ଆମର ବିଶ୍ୱାସ ଉପରେ ନିର୍ଭର କରେ । ବିଶ୍ୱାସ ପାଇଁ ଯୁକ୍ତି ନାହିଁ । ଅନୁମାନର ସୂତ୍ର ପାଇଁ ମଧ୍ୟ ଯୁକ୍ତି ନାହିଁ । ଗଣିତର ଶୂନ ପରି ଏହା ସାର୍ଥକ ଓ ନିରର୍ଥକ ।

ତଥାପି ରାସକେଲ ପୁଣି ବେମାର ପଡ଼ିଲା, ଝାଁଇଲା, ନାହିଁ ଚାଲିବୁଲି କଲା ନାହିଁ ।

ପୁଣି ବେମାର !

http://oaob.nitrkl.ac.in

ସେ ଗଲା ଡାକ୍ତରଖାନା । ସେଠି ବୁଝାଗଲା ଯେ ରାସକେଲ୍ ପାଖ ଦାଣ୍ଡୁଆ ଗାଢଅରୁ ଆମିଷ ଗନ୍ଧ ଶୁଂଘି କାଦୁଅ ଖାଇଛି ।

ଆହା, ବିଚାରର ଏତକ ବୁଦ୍ଧି ହେଲା ନାହିଁ ଯେ ଇଚ୍ଛା ପ୍ରକାଶ କଲେ ସବୁ ଭଲ ଜିନିଷ ମିଳିବ । ତେବେ କାଦୁଅକୁ ଆଗ୍ରହ କଲା କାହିଁକି ?

ଇଏ ତ ଜୀବନଧାରାର ଗୁଣ ।

ମଣିଷ ଗୁଣରେ ଆଦର ନ କରି କାହିଁ ଦୋଷ ସଂଗ୍ରହ କରେ । ପୁଣ୍ୟ ଅର୍ଜନ ନକରି ପାପ ସଂଗ୍ରହ କରେ । ସେ ଜାଣିଥିବା ଭଲ କାମ ବଦଳରେ ବେଳେ ବେଳେ ଖରାପ କାମ କରେ ।

କାରଣ ଗୁଣ ଓ ଦୋଷ ଏବଂ ଭଲ ଓ ମନ୍ଦ ହେଉଛି ଅର୍ଥହୀନ ଶବ୍ଦ । କୁକୁର ଓ ମଣିଷ ସମାନ । କୁକୁର ଓ ଠାକୁର ସମାନ । ଭଲ ଓ ମନ୍ଦ ସମାନ । ମନ୍ଦର ମୂଲ୍ୟ ମଧ୍ୟ ଯଥେଷ୍ଟ । ଈଶ୍ୱରଙ୍କ ଆଖିରେ ଏସବୁ ବାଛ ବିଚାର ନ ଥାଏ ।

ରାସକେଲ୍ ସେବା ପାଇ ଭଲ ହୋଇଗଲା । ସେ ପୁଣି ଚଞ୍ଚଳହୋଇ ତାହାର ଚହ୍ଲା ନେହନଙ୍କୁ ଖେଳାଇଲଣି ।

ଘର ଭିତରକୁ ରାସକେଲ୍ ପଶି ଆସେ । ଗାଳିଦେଲେ ବି ଡରେ ନାହିଁ । ଅଧିକାର ଏହିପରି ଗୋଟାଏ ଗୁଣ—ଯିଏ ଯେଉଁଠି ତାହାର ଅଧିକାର ସାବ୍ୟସ୍ତ କରେ ସେ ସେଇ ଅନୁପାତରେ ମୂଲ୍ୟବାନ ହୋଇଯାଏ ।

ସଂସାରକୁ ଜିଣିବାର ଏକମାତ୍ର ବାଟ ହେଉଛି ନିଜର ଅଧିକାର ଜାରି କରିବା ।

ପଙ୍ଖା ତଳେ ଶୋଇବାକୁ ରାସକେଲ୍ ଏତେ ଖୁସି ପାଇଲା ଯେ ପଙ୍ଖା ବୁଲିଲେ ରାସକେଲ୍ ଆସି ପହଞ୍ଚିଯାଏ । ପବନ ଯେଉଁଠି ସୁବିଧାରେ ମିଳିବ ରାସକେଲ୍ ସେଠି ନିୟମ ମାନିବାକୁ ନାରାଜ ।

ଆମର ନିଚ୍ଛଦନିଆ ଜୀବନର ମନ୍ତ୍ରୀ, ସାମନ୍ତ ଓ କୋଟୁଆଳ ସମସ୍ତେ ଏହି ନିୟମ ମାନନ୍ତି । ପ୍ରଶାସନର ଅନୁଶାସନର ମୂଲ୍ୟ ଦିଅନ୍ତି ନାହିଁ । ଏହାକୁ ଅମେ ବୁଝୁ ସ୍ୱାର୍ଥପରତା ଭାବରେ ବା ଆପଣ ସାର୍ଥକତା ଭାବରେ ।

http://oaob.nitrkl.ac.in

ଯିଏ ଯେତେ ସ୍ୱାର୍ଥପର ସେ ସେତେ ବଡ଼ । ନିଜର ବିପ୍ଲବକୁ ଅପର ଉପରେ ଲଦି ଦେବା ହେଉଛି ସ୍ୱାର୍ଥପରତା । ମୁଁ ଆଗ—ମୋ କଥା ଠିକ—ମୋର ଲାଭ ହେଉଛି ପ୍ରଥମ—ଏସବୁ ମିଶିଲେ ହୁଏ ସ୍ୱାର୍ଥପରତା ।

ବିଦେଶୀ ସେହି ହିସାବରେ ଖାଣ୍ଟି ସ୍ୱାର୍ଥପର ।

ବାପାମାଆଙ୍କୁ ଯେତେ ବାଧିବ ବାଧୁ ପିଲାମାନେ ଅମାନିଆ ହୁଅନ୍ତି ସେହିପରି ବିଦେଶୀ ନିଜର ପିଲା ପରି ମାଲିକଙ୍କୁ ଆଘାତ କରେ ।

ସଂସାରର ଅର୍ଥ ହେଉଛି ଆଘାତ । ଆଘାତରେ ସଂସାର ଚାଲିଛି । ସଂସାରୀ ଝାଳ ଆଘାତ ସହୁଥାଏ । ଯିଏ ଆଘାତକୁ ଡରିଯାଏ ସେ ହୋଇଯାଏ ବିରାଗୀ ଓ ବୈଷ୍ଣବ ।

ସ୍ତ୍ରୀ ପିଲା ନେଇ ଘର କରି ଦେବତ୍ୱ ପାଇବା ଅତି କଷ୍ଟକର । କିଛି ବନ୍ଧନ ନ ଥାଇ ବାବାଜୀ ହୋଇ ଦେବତ୍ୱ ପାଇବା ଅତି ସହଜ ।

ବାବାଜୀର ସାଧନା କୁକୁର ଲୁଆ ବିଦେଶୀର ସାଧନାପରି । ସମସ୍ତଙ୍କଠାରୁ ସେବା, ଯତ୍ନ, ଭକ୍ତି ଓ ଶ୍ରଦ୍ଧା ଶୁଣିନେଇ ଓ ଟାଣିନେଇ ମନର ବଡ଼ାଇ ଆଣିବା ଅତି ସହଜ କଥା ।

ଏଇ ସଂସାରରେ ଯୋଗୀ କିଏ ? କେହି ନାହାନ୍ତି କହିଲେ ଭୁଲ ହେବ । ହେବ । କିନ୍ତୁ ଯୋଗୀମାନେ ମଧ୍ୟ ନିଜକୁ ଡରନ୍ତି ।

ବ୍ରହ୍ମଚାରୀ ହେବା କଷ୍ଟକର । ବ୍ରହ୍ମଚର୍ଯ୍ୟ ରକ୍ଷିବାକୁ ହେବ ସମସ୍ତଙ୍କର ଅଖି ଆଗରେ । ବ୍ରହ୍ମଚାରୀ ପୂଜାପାଠ କରି ମାନ ସମ୍ମାନ ପାଇବ । କିନ୍ତୁ ଯତି ହେଲେ ତାକୁ ବୁଲିବାକୁ ପଡ଼ିବ ।

ଯତି କୌଣସି ସ୍ଥାନରେ ତିନି ଦିନରୁ ବେଶି ରହିପାରିବ ନାହିଁ । ଅଳ୍ପ ବୟସରେ ଯତି ହେବା କଷ୍ଟକର । ବେଶି ବୟସରେ ବୁଲିବା ମଧ୍ୟ କଷ୍ଟକର ।

ସେଥିପାଇଁ ଏଇ ସଂସାରରେ ବ୍ରହ୍ମଚାରୀ ବହୁତ ଓ ଯୋଗୀ ଖୁବ କମ । ହୃଦୟ ସମସ୍ତଙ୍କର ରହିଛି ହୃଦୟବାନ୍ କମ । ଗୁଣ ବହୁତ ଜାଗାରେ ଅଛି, କିନ୍ତୁ ଗୁଣୀ ନାହାନ୍ତି । ସତ୍ୟର ସମସ୍ତେ ଚର୍ଚ୍ଚା କରୁଛନ୍ତି । କିନ୍ତୁ ସତ୍ୟ କେତେ ଜାଣି ?

http://oaob.nitrkl.ac.in

କପାଳରେ ଚମକୁ କୁଞ୍ଚେଇ ରାସକେଲ୍ ଚାହିଁରହେ ଡମରୁ, ଅମର ଓ ସମସ୍ତଙ୍କର ମୁହଁକୁ । କ'ଣ ସେ ଦେଖେ ଓ ବୁଝେ କେହି ଜାଣନ୍ତି ନାହିଁ ।

ଆମେ ସମସ୍ତେ ସେମିତି ଯାହା ଦେଖିଲୁ, ଯାହା ବୁଝିଲୁ ସେତକ ଆମରି ଭିତରେ ରହି ସଡ଼ିଯାଏ । ପଦେ କଥା ବାହାରେ ଯେ ଲୋକଟା ଅନୁଭବୀ ।

ଅନୁଭବରୁ ସେ ବୁଝିଛି ଯେ ସଂସାରଟା ଗୋଟାଏ ରେଲଗାଡ଼ିର କାମରା ବା ହୋଟେଲ୍ ବା ପ୍ରେକ୍ଷାଳୟ । ସମସ୍ତେ ଜାଣନ୍ତି । କିନ୍ତୁ ସମସ୍ତଙ୍କୁ କହନ୍ତି ମୂର୍ଖ ।

ଅପରର ମତରେ ମୂର୍ଖ ହେବା ଯଦି ସ୍ଥିର ସତ୍ୟ ହୋଇଯାଏ ତାହାହେଲେ ଏଇ ନିଖିଳ ବିଶ୍ୱ କେବଳ ମୂର୍ଖରେ ଭରି । ନିଜର ମୂର୍ଖାମିକୁ ଜାଣି ନ ପାରିବାର ଅର୍ଥ ହେଉଛି ମାୟା ।

ବୁଝି ନ ପାରିବା ହେଉଛି ଚେତନାର ଶୂନ୍ୟତା । କିନ୍ତୁ ସମସ୍ତେ କହୁଥାଉଁ ଯେ ଆମର ଚେତନା ଅଛି । ତେଣୁ ଚେତନାର ଅର୍ଥ ହେଲା ଚେତନା-ହୀନତା । ନିଜେ କ'ଣ ବୁଝି ନ ପାରିବା ହେଲା ମୂର୍ଖତା—ଚେତନା-ହୀନତା । ଆଉ ଏତକ ଏକାଠି କରି ଆମେ ବୁଝୁ ଚେତନା ।

ଏଇ ଚେତନା କୁକୁର ଛୁଆର ନାହିଁ ବୋଲି ଆମର ଧାରଣା । ଏଇ ଭୁଲ ଧାରଣାକୁ ଆମେ ପୋଷି ପାଳି ନିଜକୁ ତାରିଫ୍ କରୁ । କିନ୍ତୁ ରାସକେଲ୍ ରହେ ନିର୍ବିକାର ।

ବାବାଜୀ ନିର୍ବିକାର । ଯୋଗୀ ମଧ୍ୟ ନିର୍ବିକାର । ଠାକୁର ନିର୍ବିକାର । ରାସକେଲ୍ ମଧ୍ୟ ନିର୍ବିକାର ।

ସେ ଜୀବନ ଓ ମରଣ ବିଷୟରେ ନିର୍ବିକାର । ତାହାର ଜୀବନ ଅଛି, ସଞ୍ଚୟ ନାହିଁ । ସୂର୍ଯ୍ୟ ଉଇଁଲେ ଦିନଟିରେ କ'ଣ ଭଲ କି ମନ୍ଦ ରହିଛି ସେ ଜାଣେ ନାହିଁ । କିନ୍ତୁ ସେ ନିର୍ବିକାର ।

ମଣିଷ ବେଶି ବ୍ୟସ୍ତ ରହେ ଆଗତ ଦିନ ପାଇଁ । ସେ ବେଶି ପାସୋରିଯାଏ ଗତ ଦିନର ଅନୁଭବକୁ । କୁକୁର ଛୁଆ ବେଶି ମନେରଖେ ଗଲା ଦିନକୁ ଓ ମୋଟେ ଚଞ୍ଚଳ ହୁଏ ନାହିଁ ଆଗତ ଦିନ ପାଇଁ ।

ତାହାର ଦିନ ହେଉଛି ଆଜି—ବର୍ତ୍ତମାନ—ଆଖି ଆଗରେ ଦେଖା ଜୀବନ । ଠିକ ଆକାଶର ସୂର୍ଯ୍ୟ, ଚନ୍ଦ୍ର ଓ ତାରା ପରି । ଆଜି ତ ପବନ ବୋହୁଛି । ଆଲୁଅ ଆସୁଛି । ଆଦର ଯତ୍ନ ମିଳୁଛି । ଆସନ୍ତା କାଲି କଥା ଭାବି ଲାଭ କ'ଣ ?

ଭାବି ଭାବି କ'ଣ କେହି ଆଇନ୍ଦା ଦିନକୁ ପୋଷା ମନେଇ ପାରିବ ? ଭାବି ଭାବି କ'ଣ ଆମେ କୁକୁର ଛୁଆକୁ ଆପଣାର କରିପାରିବା ?

http://oaob.nitrkl.ac.in

ନୁହେଁ—ଦେଲେ ମିଳେ । ଭାବ ଚନ୍ଦ୍ର ଦେଲେ କିଛି ମିଳେ ନାହିଁ । ଭାବ ଚନ୍ଦ୍ର କହିଲେ ଶବ୍ଦ ବାହାରେ, କିନ୍ତୁ କଥା ବାହାରେ ନାହିଁ । କୁକୁର କୁଆ ପରି ଯିଏ ନ ଭାବ, ନ ଚନ୍ଦ୍ର, ଯୋଜନା ନ କରି ହଠାତ୍ ଆଦେଶରେ ଥିବା ପରି ତାହାର ମନର ଭାବ ଦେଖାଏ ସେ ସେଇ ପରିମାଣରେ ବଡ଼ ଓ ମୂଲ୍ୟବାନ୍ ।

କେଜାଣି କେଉଁ ମହାଭାରତର ଯୁଧିଷ୍ଠିର ମହାରାଜାଙ୍କ ଯୁଗରୁ ମଣିଷ କୁକୁର ଓ ଠାକୁରଙ୍କ ପଛାଟରେ ରହି ଆସିଛି—ଜୀବନର ଉଦ୍ଧାର ନିଶାଣ ଖୁଣ୍ଟ ପରି । କିଏ ଅବା ସେଇ ଖୁଣ୍ଟକୁ ଚହ୍ନିବାର ହୋଇ ନିଜର ଜୀବନ କଟାଇଲି ?

ଉପରେ ଗ୍ରହ ନକ୍ଷତ୍ର ହସନ୍ତି । ଉପରେ ଈଶ୍ୱର ବି ହସନ୍ତି । ସବୁ କଥା ଆଖି ଆଗରେ ଥୋଇ ଦିଆ ହେଉଛି, କିନ୍ତୁ ଦେଖିବା ଲୋକ ଦେଖିପାରୁ ନାହିଁ । ଦେଖିଲେ ବି ବୁଝିପାରୁ ନାହିଁ ।

ସ୍କୁଲର ପଢୁଆ ପିଲାପରି ଆମେ ଈଶ୍ୱରଙ୍କ ସ୍କୁଲରେ ପଢେ କଥା, ଗୋଟିଏ ଘଟଣା, ଗୋଟିଏ ଉପଲକ୍ଷ୍ୟକୁ ମଧ୍ୟ ନିଜର ଚେତନାରେ ମିଶାଇ ନ ପାରି ହରବର ହେଉଛୁ ଓ ଈଶ୍ୱରଙ୍କୁ ନିନ୍ଦା କରୁଛୁ ।

ପରୀକ୍ଷାରେ ଫଳ ଖରାପ ହେଲେ ଘରୋଇ ଟିଉସନ୍ ମାଷ୍ଟର ବା ସ୍କୁଲର ମାଷ୍ଟର ଗାଳି ଖାଇଲା ପରି ।

ଶିକ୍ଷକ ଉତ୍ତରରେ କହୁଛି—ଏ ପିଲାର ପାଠ ହବ ନାହିଁ । ଏ ପିଲାର ମଗଜରେ ପାଠ ନାହିଁ । ଶୁଣି ଗାର୍ଡ଼ିଆନ୍ ବଗିଡ଼ି ଯାଉଛି ।

କ'ଣ ? ମଗଜରେ ପାଠ ନାହିଁ ? ଏପିଲା ପରି ଧନୀ ଓ ମାନୀ ଘରର ପିଲାର ପାଠ ନାହିଁ ?—ଇଏ ନ ହେବାର କଥା । ପ୍ରକୃତରେ ଏଇ ମାଷ୍ଟରମାନେ ହେଉଛନ୍ତି ନିକମା, ନିରସା, ଅପଦାର୍ଥ !

ମଣିଷ ସେଇଆ କହେ ଈଶ୍ୱରଙ୍କୁ । ହେ ପଥର—ହେ ଜଡ଼ ଠାକୁର । ମତେ ଏତେ ଦଶା ଓ ଦଗା ଦେଲ କ'ଣ ପାଇଁ ? ମୁଁ ତୁମକୁ ଏତେ ଭକ୍ତି କଲି । ତୁମକୁ ଏତେ ପ୍ରକାରରେ ତୋଷ କଲି । ଶେଷରେ ଏଇଆ ମିଳିଲା ମତେ ?

ଆମେ ବି ରାସକେଲ୍‌କୁ ସେଇ କଥା କହୁ । ରେ ପଶୁ—ରେ ଚଣ୍ଡାଳ । ତୋ ପାଇଁ ଏତେ କଷ୍ଟ ହେଲି । ହେଲେ ତୋର ସ୍ୱଭାବ ବଦଳିଲା କେତେବେଳେ । ଆମକୁ ଟିକିଏ ସୁଖ ଦେବା ପାଇଁ କ'ଣ ଅବା ତୁ କଲୁ ? କି କରିପାରିଲୁ ?

ନେଇଗଲୁ ସବୁ । ଦେଲୁ ଅବା କ'ଣ ?

ସ୍ୱାମୀ ପଶୁରେ ସ୍ତ୍ରୀ କୁ । ସ୍ତ୍ରୀ ଗୃହିଁ ରହେ ରାସକେଲ୍ ପରି ।

http://oaob.nitrkl.ac.in

ଦେବା ଲୋକ ନେଇପାରେ ନାହିଁ । ନବା ଲୋକ ଦିଏ ନାହିଁ । ଭକ୍ତ ପାଣି ଉପରକୁ ଲହଡି ପିଟେ ନାହିଁ । ନିଜର ଧର୍ମ ପାଳନ କରି ସମସ୍ତେ କାମ କରନ୍ତି ।

ସେଥିରେ ପୁରସ୍କାର ଓ ତିରସ୍କାର ହେଉଛି ବିପଦ ଆପଦ । କେହି କିଛି ଦିଅନ୍ତି ନାହିଁ । ଗଡ଼ିଯାଉଥିବା ପାଣି ବୋହି ଯାଉଥିବା ପବନ, ଝଡ଼ି ହୋଇ ପଡ଼ୁଥିବା ଆଲୁଅ କେବେ କ'ଣ କାହାକୁ ଖୁସି ହୋଇ କିଛି ଦେଇଥିଲେ ଯେ ପାଇବାକୁ ଆଶା ରଖିବେ ?

ଆଶା ନ ଥାଇ ଆଶା ରଖିବା ଓ ଅନ୍ୟାୟରେ ଆଶା କରିବା ହେଉଛି ସଂସାରର ମାୟା ।

ଏସକେଲ୍ ପରି କୁକୁରମାନଙ୍କର ଆଶା ଅଛି । ଅନେକ ପ୍ରକାରର ଆଶା ରହିଛି—ମାଡ଼ ଖାଇବେ ନାହିଁ । ଭଲ ଜିନଷ ଖାଇବେ । ସୁବିଧାରେ ଚଳିବେ । କିନ୍ତୁ ଏଇ ସବୁ ସଂଗ୍ରହ କରିବା ପାଇଁ ତାଙ୍କର ଯୋଜନା ନ ଥାଏ । ଯୋଜନା ପାଇଁ ଦରକାର ମନ ।

ଯେଉଁମାନଙ୍କର ମନରେ ବହୁତ ପ୍ରକାରର ପାଞ୍ଚ ରହିଛି ତାଙ୍କର ଆଶା ଓ ଯେଉଁମାନଙ୍କର ପାଞ୍ଚ ନାହିଁ, ସେଇ ମଣିଷଙ୍କର ଆଶା ଅଲଗା ପ୍ରକାରର ।

କୁକୁରର ଆଶା ଓ ସତ୍ ଲୋକର ଆଶା ପ୍ରାୟ ସମାନ । ଦରକାର ପୂରଣ ହେଉ ବୋଲି ଆଶା ରହେ । କିନ୍ତୁ ସେଇ ଆଶା ପୂରଣ କରିବାକୁ ମନରେ ଉପାୟର ପାଞ୍ଚ ଅଲଗ ରଖନ୍ତି ।

ସେମାନେ କହନ୍ତି ଦୁଃଖ ଓ ସୁଖ ଯାହା ମିଳିଲା ତାକୁ ସମାନ ଭାବରେ ଗ୍ରହଣ କରିବା ।

ଥରେ ମରୁଭୂମି ଅଞ୍ଚଳରେ ଜଣେ ପାଦ୍ରି ଖାଇ ବସିଲାବେଳେ ଦେଖିଲେ ପ୍ଲେଟ୍‌ରେ ପୋକ ଭଜା ଥୁଆ ହୋଇଛି । ଗୁହିଁଦେଇ ସେ ଭଗବାନଙ୍କର ନାମ ସ୍ମରଣ କରି ଖାଇ ବସିଲେ ।

କିନ୍ତୁ ସେତକ ଆମର ଦଣ୍ଡକାରଣ୍ୟରେ ହାକିମମାନେ ବାସିନ୍ଦାମାନଙ୍କର କାଇ ପିମ୍ପୁଡ଼ି ଚଟଣି ଅବା ପୋକଯୋକ ପୋଡ଼ା ଭଜା ଦେଲେ ଖାଇପାରୁ ନାହାନ୍ତି ।

ଲମ୍ପଟ ବ୍ୟବସ୍ଥାପକ ଓ ହାକିମ ଯେତେବେଳେ ରିକ୍ସାବାଲା ମାର୍ଫତରେ ନୈଶ-ବିହାର ପାଇଁ ଯୁବତୀ ଅଣାଉଛନ୍ତି ସେତେବେଳେ ଯୁବତୀକୁ ଆଘ୍ରାଣ କରି ଫେରାଇ ଦେଉଛନ୍ତି । ଆସିଛ—ଟଙ୍କା ନେଇଛ । କିଛି ଯାଏ ଆସେ ନାହିଁ । କିନ୍ତୁ ତୁମେ ଗ୍ରହଣୀୟ ନୁହଁ ।

http://oaob.nitrkl.ac.in

ଯୁବତୀ ଗୃହିଁ ରହୁଛି ବାବାଙ୍କୁ । ଇଏ କ'ଣ ପ୍ରଶ୍ନ ? ଯୁବତୀର କ'ଣ ଯୁବକ ପାଖରେ ବା ନାରୀର ପୁରୁଷ ପାଖରେ ପ୍ରୟୋଜନ ନାହିଁ ?

ଭୋକ ପେଟରେ ପରିଚିତ ଭାତ ତରକାରୀ ବଦଳରେ ଯଦି କାହାକୁ ଗଧ ଧୁଧ, କଇଁଛ ମାଂସ ବା ବଗଟିଏ ପରସା ଯାଉଛି ସେ ବିରକ୍ତ ହୋଇ ମୁହଁ ଫେରାଇ ନେଉଛି ।

ମଣିଷର ମନର ଭୋଖ ବା ଦେହର ଭୋକ ଅବା ପେଟର ଭୋକ ଯେକୌଣସି ଖାଦ୍ୟରେ ଶାନ୍ତି ପାଇବ ନାହିଁ । କୁକୁରକୁ ଆଉଁସିବା ସୁଖ ବିଲେଇକୁ ଆଉଁସିଲେ ମିଳେ ନାହିଁ । ବିଲେଇକୁ ଆଉଁସିବା ସୁଖ ମଣିଷକୁ ଆଉଁସିବା ସାଙ୍ଗରେ ସମାନ ନୁହେଁ ।

ସ୍ପର୍ଶରେ କିଛି ଅର୍ଥ ନାହିଁ । ଗଣିତର ଶୂନ ସଂଖ୍ୟା ପରି ଏହା ଅଲଗା ଅଲଗା ରୂପ ନିଏ । ପୁରୁଷକୁ ସ୍ପର୍ଶ କରିବା ଓ ନାରୀକୁ ସ୍ପର୍ଶ କରିବା ଅଲଗା ଅନୁଭୂତି ।

ନିଜର ପୋଷା କୁକୁର, ନିଜର ଚିହ୍ନା କୁକୁର ଓ ରାସ୍ତାର ବାରବୁଲା କୁକୁରକୁ ଛୁଇଁଲେ, ଆଉଁସିଲେ ଅବା ଗେଲ କଲେ ନିଜର ଅନୁଭବକୁ ମାପି ହୁଏ ।

ମନ୍ତ୍ରୀଙ୍କ ଆତିଥ୍ୟ, ନିଜଙ୍କର ଆତିଥ୍ୟ, ଯୋଗୀ ଓ ସାଧକଙ୍କର ଆତିଥ୍ୟକୁ ପ୍ରବଳ ପ୍ରତାପୀ, ବିଶେଷ ଜ୍ଞାନ, ବିଶେଷ ଅନୁଭବୀ ଓ ବିଶିଷ୍ଟ ଧନୀଙ୍କର ଆତିଥ୍ୟ ଓ ସାହଚର୍ଯ୍ୟ ଅଲଗା ଅଲଗା ରସ ସୃଷ୍ଟି କରେ ମନରେ ।

ସଂସାରର ଅସଂଖ୍ୟ କୁକୁର ଭିତରେ ଶ୍ରେଷ୍ଠ ରାସକେଲ୍ ଠିଆ ହୋଇଯାଏ— ସେ ଅମର । ରାସକେଲ୍ ର ଆମେ ଓ ଆମର ରାସକେଲ୍ ।

ମୂର୍ଖ, ଓଲମ୍ପୀ, ସ୍ୱାସ୍ଥ୍ୟହୀନା, ଗୁଣହୀନା ନାରୀ ଏଇ କାରଣରୁ ଚିରଦିନ ଖାଲି ପୂଜା ପାଏ ସେତିକି ନୁହେଁ, ତାହା କଥା ଖବରକାଗଜରେ ବାହାରେ । ତାହାର ତୈଳଚିତ୍ର ରହେ । ତାହାର ବର୍ଷକୁ ବର୍ଷ ପୂଜା ହୁଏ । ପୃଥିବୀର ଫୁଲଫଳ, ଗୁଣୀ-ମାନୀ, ପ୍ରତିଭାପ୍ରଣୟକୁ ଆମେ ପାଦରେ ଆଡ଼େଇ ଦେଇ ନିଜର ମଲ୍ଲୀ, ଆଳୁ, ଗୃହାଳୀ ମାଷ୍ଟର, ଲୋଅର ଗ୍ରେଡ୍ କିରାଣୀ ଅଭିମାନ, ମଫସଲ ଟୋକାର ପ୍ରଣୟ ବା ନିଜର ସ୍କୁଲ ଗ୍ରୁପ ଫୁଅର ପ୍ରତିଭା ଆଗରେ ସାରା ପୃଥିବୀର ସବୁ କଥା ଶ୍ରେଷ୍ଠ ।

ସମରକନ୍ଦର ଶୀର୍ଷ ସମ୍ପର୍କ ବେଳରେ ତାହାର ବାଦସାହା କହିଥିଲେ—ମୋର ମୋର ପ୍ରେୟସୀର ଚିବୁକରେ ଗୋଟାଏ ମନ୍ଦା କଳାଜାଇ କେହି ରୋପଣ କରି-ପାରିଲେ ତାକୁ ମୁଁ ସାରା ସମରକନ୍ଦର ସବୁ ଧନଦୌଲତ ଦେଇଦେବି ।

http://oaob.nitrkl.ac.in

ଏମିତି ମୂଲ୍ୟ କରିହୁଏ । କାର୍ତ୍ତିକ ମାସରେ ମାରୁ, କଞ୍ଚା କଦଳୀ ଓ ଓଉ ଏକାଠି ଉପରକୁ ଉଠନ୍ତି । ସେମାନଙ୍କ ପାଖରେ କୋବି, ସାଲଗମ, ଗାଜର, ବିନ୍ ଇତ୍ୟାଦି ମୂଲ୍ୟହୀନ ।

ନିଜ ଘରର ବଡବଡୁଆ, ଇଷ୍ଟଦେବତା ଓ ବୃନ୍ଦାବତୀ ଚଉରା ପାଖରେ ଏଇ ନିଖିଳ ବିଶ୍ୱର ସବୁ ଦେବଦେବୀ ନିଷ୍ପ୍ରଭ ।

ବୁଲି କୁକୁରର ଛୁଆ ରାସକେଲ୍ ତୁଳନାରେ ସର୍କସର ବାଘ, ସିଂହ, ନନ୍ଦନକାନନର ସବୁ ଜନ୍ତୁ ଶ୍ରେଷ୍ଠ । ଏଇ ଶ୍ରେଷ୍ଠ ରାସକେଲ୍ର ମାଲିକାନା ପାଇଁ ସାରା ସଂସାରର ଧନ ଦୌଲତ ଅତି କମ୍ ଓଜନ ।

ଏହି ମୂଲ୍ୟ ହୋଇଥାଏ ମଣିଷର ମନରେ । ଆମେ କହୁ ଯାହାର ମନ ଯେତେ ତାହାର ପ୍ରଭୁ ତେତେ । ଯାହାର ମନ ଯେତେ ତାହାର ଆଶ୍ରିତ ମଧ୍ୟ ତେତେ ।

ଇଏ ହେଲା ସଂସାରର ସ୍ତର ।

ରାସକେଲ୍ର ମାଲିକର ବାପା ଦେହ ଖରାପ ହୋଇଥିଲା । ଡାକ୍ତର ପାଇଁ ପଇସା ହେଲା ନାହିଁ । ମାଲିକର ବାପାର ଚିକିତ୍ସା କଲେ ବାଙ୍କାବଜାରର ହୋମିଓ ଡାକ୍ତର । ରାସକେଲ୍ ମାଲିକର ଅଜା ମଲାବେଳକୁ କେହି ଗୀତା କି ରାମାୟଣ ପଢିଲେ ନାହିଁ । କିନ୍ତୁ ରାସକେଲ୍ର ଦେହ ଖରାପ ହେଲାବେଳେ ଚଣ୍ଡିପାଠ ହୋଇଥିଲା ।

ସଂସ୍କୃତ ବୁଝିବା କଷ୍ଟ ହେଉଥିଲା ; କିନ୍ତୁ ମନ୍ତ୍ରର ଔଷଧ ପାଉଥିଲା ରାସକେଲ୍ ।

ଭାରତବର୍ଷ ଆଗେଇ ଯାଇଛି । କୁକୁର ପାଇଁ ଟେପ୍ ଓ କାସେଟ୍ ବାଜୁଛି । ତାହାର ଦେହ ପାଇଁ ଇଞ୍ଜେକ୍ସନ ଔଷଧ ଆସୁଛି । ତାହାର ଯିବା ଆସିବା ପାଇଁ ରିକ୍ସା ଲାଗୁଛି ।

ମଣିଷ ତାହାର ପେଟ ପାଇଁ ଓ ବୃତ୍ତି ପାଇଁ କୁକୁରକୁ ପାଖରେ ବସାଇ ରୁଳୁଛି । ଏଣେ ବାଟରେ ସେ ପତ୍ୟେକ ଭିକାରୀକୁ ନାହିଁ ନାହିଁ କହି ଚାଲୁଛି । ନିଜର ସ୍ତ୍ରୀ'ର ମନ ରଖିବା ପାଇଁ ସେ ସବୁ ଉତ୍ସାହୀ ନାରୀଙ୍କର ନିବେଦନକୁ ମନା କରିଦେଉଛି ।

ଏଇ ବ୍ରହ୍ମାଣ୍ଡ ଭିତରେ ଆମର ପୃଥିବୀ । ଏଇ ପୃଥିବୀ ଭିତରେ ଆମର ଭାରତ-ବର୍ଷ । ଏଇ ଭାରତବର୍ଷ ଭିତରେ ଆମର ଉତ୍କଳଜନନୀ । ଆଉ ଏଇ ଉତ୍କଳଖଣ୍ଡରେ ସହରଟିଏ କଟକ । ସେଇ ସହରର ଗୋଟିଏ ଶ୍ରେଷ୍ଠ ଗଳିରେ ଠିଆ ହୋଇଥିବା ଇଟାଦିଦିରି ପୁରୁଣା ଘରଟିରେ ଗୋଟିଏ ଦମ୍ପତୀସ୍ଥ ପରିବାର—ରାସକେଲ୍ର ମାଲିକଙ୍କର ।

http://oaob.nitrkl.ac.in

କିନ୍ତୁ ଗ୍ରସକେଲ୍ ତାଙ୍କ ମଣଟାର ଅମୂଲମୂଲ ।

ଗ୍ରସକେଲ୍ ର ମୂଲ୍ୟହୀନ ଜୀବନକୁ ମୂଲ୍ୟ ଦେବା ପାଇଁ ପୀରଙ୍କ ପାଖରେ ମିଠେଇ ମାନସିକ କର୍‌ବାକୁ ପଡ଼ିଲା । ପୀର ପଛକେ ଦଶଙ୍କା ଟଙ୍କାଏ ନ'ଅନ୍ତୁ ଗ୍ରସକେଲ୍ ର ଜୀବନ ରକ୍ଷା ହୋଇଯାଉ ।

ଗ୍ରସକେଲ୍ ମୋଟାମୋଟି ବଞ୍ଚିଗଲା । ପୀର ମିଠେଇ ଖାଇଲେ । ଚଣ୍ଡୀର କାସେଟ୍ କଣା ଫଳ ଦେଖାଇଲା । ଗ୍ରସକେଲ୍ ପାଖକୁ ଆସିଲା ।

କିନ୍ତୁ ଡର ଖାଙ୍କ୍ ନ ଥାଏ । ପଶୁ ଡାକ୍ତର କହିଥିଲେ ବିଷ ଖାଇବାରୁ ସେ ଦୁ'ମାସ ମାସକରେ ପାଗଳା ହୋଇପାରେ । ପାଗଳା କୁକୁର କାମୁଡ଼ାରେ ଭୋଗିବା ମୋଟେ ଆନନ୍ଦଦାୟକ ନୁହେଁ ।

ସେମିତି ହୁଏ ଘରର ମାଲିକକୁ ଗ୍ରଜକାଶ ଗ୍ରାସିଲେ । କେମିତି ଗ୍ରଜକାଶ ସାଙ୍ଗରେ ଚଳିବାକୁ ହେବ । ବାବୁ ଡାକ୍ତରଖାନା ଯିବାକୁ ରାଜି ନୁହନ୍ତି । ସେ ମରିବା କଥା ମରିବେ । ତାଙ୍କର ପ୍ରାଣ ପୂରିଗଲାଣି । କିନ୍ତୁ ବୁଡ଼ିଲା ଲୋକ ପାଖ ଲୋକଙ୍କୁ ଟାଣି ନେଲା ପରି ସମସ୍ତେ ମରିବେ ।

ମରିବା ପାଇଁ କିଏ ହଠାତ୍ ରାଜି ହୋଇପାରିବ ? ବଞ୍ଚିଗଲେ ସିନା ଭଲକଥା କହିହେବ ।

ଅନ୍ୟର ସୁଖ ପାଇଁ ବଞ୍ଚିବା ଜୀବନର ସାର୍ଥକତା । ଇଏ ବୁଦ୍ଧିର ବାହାରେ ନାହିଁ । ହୃଦୟରୁ ବାହାରେ । ଏହାର ନାମ ସମ୍ବେଦନା । ଏଥିରେ ଗରିବ ଧନୀର ସମ୍ପର୍କ ନାହିଁ । ମୂର୍ଖ ଓ ପଣ୍ଡିତର ସମ୍ପର୍କ ନାହିଁ ।

ମଣିଷର ହୃଦୟ ଓ କୁକୁରର ହୃଦୟ ନ୍ୟାୟର ତରାଜୁରେ ସମାନ । କିନ୍ତୁ ସଂସାରର ମାପରେ ଗୋଡ଼ର ସଂଖ୍ୟା ଗଣାଯାଏ । ବଦ୍ୟାର ମହାତ୍ମ୍ୟ ମପାଯାଏ । ତେଣୁ ଗ୍ରସକେଲ୍ ତାହାର ମାଲିକଠାରୁ ବହୁତ ତଳେ । ଯେମିତି ମନ୍ତ୍ରୀ ତଳେ ରହେ ଏମ୍. ଏଲ୍. ଏ. । ଏମ୍. ଏଲ ଏ. ତଳେ ରହେ କଲେକ୍ଟର । ସବା ତଳେ ରହେ ବିଚରା ଚପରାସି ।

ଚପରାସିର ଜଣ ଯେତେ ବଢ଼ିଆ ହେଉ ନା କାହିଁକି ହାକିମଙ୍କ ଜଣଠାରୁ ବହୁତ ତଳେ । ଗ୍ରସକେଲ୍ ର ଯେତେ ସୁନ୍ଦର ଜଣ ହୋଇଥାଉ ସେତିକ ପ୍ରେମିକାର ଜଣଠାରୁ ବହୁତ ବହୁତ ତଳେ ।

ପ୍ରେମିକାର ନାକ ଅଗ ଓ ଉପର ପାଟି ଭିତରେ ଜଣକୁ ଗ୍ରହି ଲୋକ ହୋକ ଶୋଷ ଭୁଲି ଯାଇପାରେ କିନ୍ତୁ, କୁକୁର ଛୁଆର ଜଣ ଦେଖି ଦୁ' ମିନଟ୍ ସମୟ ଦେଇପାରିବ ନାହିଁ ।

http://oaob.nitrkl.ac.in

ଘାସକେଲ୍ ସାଙ୍ଗରେ ତୁଳନା ହୁଏ ଲାଇଟ୍ ଓ ଲାଇଟ୍‌ର ସାଙ୍ଗ ନୋଖା ।

କାହାର ରଙ୍ଗ ଭଲ ? କାହାର ବାପ ମା'ଙ୍କର ସୁଖ୍ୟାତି ଅଛି ? ସେଇ କାରଣରୁ ମୂଲ୍ୟର ପ୍ରଭେଦ ହୁଏ ।

ପୁଣି ମୂଲ୍ୟ ହୁଏ ମାଲିକର ଓଜନ ନେଇ । ପିଅନର କୁକୁର ହାକିମ ମହାପ୍ରଭୁଙ୍କର କୁକୁରଠାରୁ ତଳେ ।

ପଶୁ ଡାକ୍ତର ଯେତେ ଗୁଣ ଚିହ୍ନନ୍ତୁ ଚପରାସିର କୁକୁର କେବେହେଲେ ମାଲିକର କୁକୁର ସାଙ୍ଗରେ ସମାନ ନୁହଁ ।

ଉପର ହାକିମଙ୍କର ସ୍ତ୍ରୀ ବାଳକ କେବେହେଲେ ତଳିଆ ହାକିମଙ୍କର ସ୍ତ୍ରୀ ବାଳକର ସମାନ ନୁହେଁ ।

ବମ୍ବେଇ, ଦିଲ୍ଲୀ, ମାନ୍ଦ୍ରାଜର ମଣିଷ କ'ଣ କଟକ ସମ୍ବଲପୁର ମଣିଷଙ୍କର ସମାନ ?

ଓଡ଼ିଶାର ବୁଢ଼ିଆ ଲେଖକ କ'ଣ ଅନ୍ୟ ବଡ଼ ରାଜ୍ୟର ବୁଢ଼ିଆ ଲେଖକଙ୍କ ସହିତ ସମାନ ? ଦିଲ୍ଲୀର ଡାକ୍ତର କ'ଣ ଚୌଦ୍ୱାରର ଡାକ୍ତରର ସମାନ ?

ସୁଖ ଓ ଦୁଃଖ ହେଲେ ନିରର୍ଥକ ଶବ୍ଦ । କୋଠାବାଡ଼ି ନିରର୍ଥକ ଶବ୍ଦ । ବୁଦ୍ଧି ଓ ପାଣ୍ଡିତ୍ୟ ସବୁଦିନେ ତୁଳନାତ୍ମକ ଶବ୍ଦ । ଗୁଣଧାମର ମହିମା ମଧ୍ୟ ତୁଳନାତ୍ମକ । ବଡ଼ ଠାକୁରଙ୍କର ବଡ଼ ଭକ୍ତ ରହନ୍ତି । କିନ୍ତୁ ବଡ଼ ଭକ୍ତମାନେ କେବେ ହେଲେ ବଡ଼ ଠାକୁରଟିଏ ଗଢ଼ିପାରନ୍ତି ନାହିଁ ।

ଘାସକେଲ୍ ତାହାର ଗ୍ରେଷ୍ଟିଆ ଜୀବନରେ ଏଇ କଥା ଶିଖାଉଥିଲା । ତମେ ଶ୍ରେଷ୍ଠ । କିନ୍ତୁ ଶ୍ରେଷ୍ଠ ହେଲେ ବି ତୁମର ହୃଦୟ ବଡ଼ ।

ବଡ଼ ଶରୀରରେ ବଡ଼ ହୃଦୟ ଶୋଭା ପାଏ । ଉପଯୁକ୍ତ ଜୀବନରେ ଦୟା କ୍ଷମା ଆଦି ସଦ୍‌ଗୁଣ ଦେଖାଯାଏ । ଧନୀ ଓ ପଦପଦବୀଯୁକ୍ତ କୁଳରେ ସତୀ ଦେଖାଯାନ୍ତି । ମହାତ୍ମ୍ୟ ସବୁବେଳେ ଅସାଧାରଣଙ୍କଠାରେ ଦେଖାଯାଏ ।

ଘାସକେଲ୍‌ର ମାଲିକ ଭାବି ଭାବି ମନ ମାରିଦିଏ । ମନକୁ ମନ କହେ—ରେ ହତଭାଗ୍ୟ ଘାସକେଲ୍ ' କ'ଣ ପାଇଁ ଏଇ ଅକିଞ୍ଚନ ଦୁଆରେ ପାଦ ଦେଲୁ ? ମା' କହେ ପୁଅକୁ—କ'ଣ ପାଇଁରେ ପୁଅ ଏଇ ଅଭାଗିନୀ ପେଟରେ ଜୀବନ ପାଇଲୁ ?

ଯାହାର କିଛି ନାହିଁ ବା ଅଳପ ଅଛି ସେ ତତେ ଦେବ କ'ଣ ? ଦେଇପାରିବ ସ୍ନେହ, ଆଦର ଓ ଯତ୍ନ; କିନ୍ତୁ ଏଥିରେ ତୁ କ'ଣ ମଣିଷ ହୋଇପାରିବୁ ?

ଉତ୍କଳ ବିଶ୍ୱବିଦ୍ୟାଳୟ କ'ଣ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ସଙ୍ଗେ ସମାନ ?

http://oaob.nitrkl.ac.in

ଖାଲି ବିଶ୍ୱବିଦ୍ୟାଳୟକୁ ଲାଗିଗଲେ କ'ଣ ସମାନ ହୋଇଯିବ ?

ବିଜୁ ପଟ୍ଟନାୟକ ଓ ଜାନକୀ ପଟ୍ଟନାୟକ କ'ଣ ଏକା ପାହାଚର ନେତା ? ସେମାନେ କ'ଣ ସମାନ ?

କଟକ ଜେଲର ଦଣ୍ଡଭୋଗୀ ଗଣ୍ଠି କଟା କ'ଣ କଲିକତା ଜେଲର ଗଣ୍ଠି କଟା ସାଙ୍ଗରେ ସମାନ ?

ସମୁଦ୍ରର ତରଙ୍ଗ ସମୁଦ୍ର ନୁହେଁ । ସମୁଦ୍ରର ପ୍ରତ୍ୟେକ ତରଙ୍ଗ ପରସ୍ପର ସମାନ ନୁହେଁ । ସାରା ପୃଥିବୀକୁ ଘେରି ରହିଥିବା ସମୁଦ୍ର ସବୁଠାରେ ସମସ୍ତଙ୍କର ସମାନ ମୂଲ୍ୟର ହୋଇପାରେ ନାହିଁ ।

ବେଦ ସାଙ୍ଗରେ ଉପନିଷଦ୍ ସମାନ ନୁହେଁ । ତାହା ସାଙ୍ଗରେ ଗୀତା, ଚଣ୍ଡି ସମାନ ନୁହେଁ । ଏମାନଙ୍କ ସାଙ୍ଗରେ ରାମାୟଣ ମହାଭାରତ ମଧ୍ୟ ସମାନ ନୁହେଁ ।

ସବୁଠାରେ ସୃଷ୍ଟି ଓ ସର୍ଜନା ଏକା ପରି । ନେତୃତ୍ୱ ଓ ନୌକରୀ ଠିକ୍ ଏହିପରି ।

ଈଶ୍ୱରଙ୍କ ଭିତରେ ଶ୍ରେଣୀ ବିଭାଗ ଅଛି । ଠାକୁରଙ୍କ ଭିତରେ ପର୍ଯ୍ୟାୟ ରହିଛି । ସାଧକଙ୍କ ଭିତରେ ଶ୍ରେଣୀ ବିଭାଗ ଅଛି । ଧର୍ମଶାସ୍ତ୍ରରେ ଟଭା, ଆମ୍ବୁଲ ଓ କଞ୍ଚା ଆମ୍ବ ପରି ଅଲଗା ସ୍ୱାଦ ଅଛି । ମିଠାଶାସ୍ତ୍ରରେ ଚିନି, ଗୁଡ଼, ମିଶ୍ରି ପରି ପ୍ରଭେଦ ରହିଛି ।

ମଣିଷର ମୁକ୍ତି ମଧ୍ୟ ସେମିତି ଗୋଟିଏ ଗୋଟିଏ ପ୍ରଶ୍ନ । ପ୍ରତ୍ୟେକ ମଣିଷ ସମାନ ଭାବରେ ମୁକ୍ତି ପାଇପାରିବ ନାହିଁ । ଇଏ ମଧ୍ୟ ତାହାର ଦରକାର ନାହିଁ ।

ପଶୁପକ୍ଷୀଙ୍କୁ, ବୃକ୍ଷଲତାଙ୍କୁ, ଆଲୁଅ ପବନକୁ ନିଜର ଭାବି ଅସୀମ କୃତଜ୍ଞତାରେ, ଅସରନ୍ତି ଶ୍ରଦ୍ଧାରେ ଆପଣାର କରିବାକୁ ଚେଷ୍ଟା କଲେ ନିଜର ହୃଦୟର ଅଟକଳ ନେଇହେବ ।

ଯିଏ ଶ୍ରେଷ୍ଠ, ଯିଏ ମୂଲ୍ୟହୀନ, ଯିଏ ଅସହାୟ ତାକୁ ବଡ଼ ବା ମୂଲ୍ୟବାନ୍ ଓ ପରାକ୍ରମୀ ମନେକରିବା ହେଉଛି ଜୀବନର ସଫଳତାର ମୂଳତତ୍ତ୍ୱ ।

ଧାନର ପୋକ, ବାଲୁଙ୍ଗାର ଇତିବୃତ୍ତ, ବେଶ୍ୟାର ସମସ୍ୟା, ଭିକାରୀର ଦୁଃଖ ବିଷୟରେ ବହି, ସନ୍ଦର୍ଭ ଓ ସର୍ଭେ କରି ଅନେକ ଲୋକ ପେଟ ପୋଷୁଛନ୍ତି । ପର୍ଯ୍ୟଟନ ବିଭାଗ ଆମର ଦେଶର ଜାଣିବା କଥା, ଦେଖିବା କଥାକୁ ଦାମିକା କାଗଜରେ, ସୁଦୃଶ୍ୟ ଓ ଛପା ଚିତ୍ର ମଧ୍ୟରେ ପ୍ରକାଶ କରି ଯେମିତି କୃତାର୍ଥ ହୁଅନ୍ତି ।

ପଦାର୍ଥର ଭିତରର ମୂଲ୍ୟ ବଦଳେ ନାହିଁ । ସାଇକେଲ୍‌ର ପାଙ୍ଗିରି ବଦଳିବ ନାହିଁ । ସାଇକେଲ୍‌ର ମାଲିକର ଦୋଷଗୁଣ ବଦଳିବ ନାହିଁ । ନିମ୍ବ ମିଠା ହେବ ନାହିଁ । ଗଇଣ ଫୁଲ ମଲ୍ଲୀ ଫୁଲ ହେବ ନାହିଁ । ଯିଏ ଯାହା ସେଇଆ ରହିବେ ।

http://oaob.nitrkl.ac.in

ସଂସାରର କର୍ତ୍ତା ସମସ୍ତଙ୍କୁ ଖୋଜନ୍ତି । ଆମେ ବି ସତ୍ୟ ଖୋଜୁ । ଚୋରଙ୍କୁ ଖୋଜୁ, ଅଉ ପୁଲିସକୁ ଖୋଜୁ ।

ଯେଉଁ ପୁଲିସ ଚୋର କଣ ଜାଣେ ନାହିଁ ସିଏ କ'ଣ ଚୋରକୁ ଧରିପାରିବ ? ସିଏ ନରରକ୍ତରେ ଖେଳି ନ ପାରେ ସେ କ'ଣ ଯୁଦ୍ଧଭୂମିର ଆଗୁଆ ଲାଇନରେ ପଶି ଯାଇପାରିବ ।

ଗୁଣ୍ଡା ଓ ବଦ୍‌ମାସ୍ ହେଉଛି ଆମର ନଛୁଟିବା ଶବ୍ଦ ।

ଗୁଣ୍ଡା ବଦମାସ୍ ନ ଥିଲେ ଶାସନ ନ ଥାନ୍ତା । ପ୍ରଶାସକ ନ ଥାନ୍ତେ । ମନ୍ତ୍ରୀ ନ ଥାନ୍ତେ । ମଦ ଓ ମହୁଲା ନ ଥା'ନ୍ତେ ।

ଏଇ ସଂସାର ହୋଇଥାନ୍ତା ମାରସହ୍ମାନ ।

ପିଣ୍ଡାରୀମାନେ ଓ ବର୍ଗୀମାନେ ଲୁଣ୍ଠନ କରୁଥିଲେ । ଏବେ ଆମର ସାମ୍ବିଧାନିକ ଶାସକମାନେ ଲୁଣ୍ଠନ କରୁଛନ୍ତି । ଖାଲି ଲୁଣ୍ଠନର ଉପକରଣ ବଦଳିଛି ।

ବଟ୍ଟରର ମାପ ବଦଳିଛି । ସେଇ ବଟ୍ଟର କହୁଛି ଯେ ବଡ ଡାକ୍ତରଖାନାକୁ ଦାମିକା ରୋଗୀ ଆସିବେ । ଦାମିକା କୁକୁର ଆସିବେ । ଦାମିକା ସେବାକାରିଣୀ ଆସିବେ । ଦାମିକା ଯନ୍ତ୍ର ଆସିବ । ଦାମିକା ଔଷଧ ଆସିବ ।

ହାତୀ ଯାହା ଓ ଯେମିତି ଖାଇବ, ତାକୁ ଛେଳି, ମେଣ୍ଢା ବା ଗାଈଟିଏ ଖାଇ ପାରିବ ନାହିଁ । ଛତାବାଘ ମଣିଷ ମାରିପାରିବ ବୋଲି ବିଲୁଆ ମହାରାଜ ମଣିଷକୁ ମାରି ପାରିବେ ନାହିଁ ।

ରାସକେଲ୍ ଟର କୁକୁର ତାଲଚେର, ଢେଙ୍କାନାଳ ଆଦି ରାଜା ମହାରାଜାଙ୍କର ଉଆସକୁ ଯାଇପାରିବ ନାହିଁ । କଲେକ୍ଟର ଓ କମିସନରଙ୍କ ଘରେ ମଧ୍ୟ ତାହାର ସ୍ଥାନ ନାହିଁ ।

କିନ୍ତୁ ସେଠି ସ୍ଥାନ ପାଇପାରିବେ ମଶା, ମାଛି, ଗୁରପୋକ, ଅସରପା ଓ ଛିଟପିଟି । ଏମାନଙ୍କୁ ଦେଖାହୋଇଛି ଦେଖାଇ ଦେବାକୁ ଯେ ଏଇ ସୃଷ୍ଟିରେ କ୍ଷମତାର ବଳ ଓ ବଗୁରସ୍ଥାନତାର ନିଷ୍ଠୁରତା ସମସ୍ତଙ୍କୁ ସମାନ ଭାବରେ ଅପଦସ୍ତ କରିପାରିବ ନାହିଁ ।

ସ୍ଥାନ କାଳ ପାତ୍ର ନେଇ- ପ୍ରତ୍ୟେକେ ଉପରକୁ ଯିବେ—ଯାଇ ଆସୁଛନ୍ତି ଓ ଯାଉଥିଲେ । ପ୍ରତ୍ୟେକ ପଙ୍ଗୁ ଗିରି ଲଙ୍ଘନ କରିବ, କିନ୍ତୁ ଗିରି ଲଙ୍ଘନ କରିବାକୁ ଭଗବତ୍ ପ୍ରାର୍ଥନା ଓ କରୁଣାର ଆବଶ୍ୟକତା ନାହିଁ ।

http://oaob.nitrkl.ac.in

ରାସକେଲ୍ ନ ଥିଲେ ତାହାର ମାଲିକର ପରିବାରର ଜୀବନରେ ଜୀବନର ସ୍ୱାଦ ନ ଥାନ୍ତା । ରାସକେଲ୍ ବିଷ ଖାଇ ନ ଥିଲେ ତାହାର ପାଳକ ପରିବାରରେ ଗୋଟାଏ ଦାମିକା ଅନୁଭବର ସ୍ୱାଦ ମିଳି ନ ଥାନ୍ତା ।

ସୃଷ୍ଟିକର୍ତ୍ତା ସମସ୍ତଙ୍କୁ ଶିଖାଇଥାନ୍ତି ଏମିତି ବିପଦ ଓ ସଂପଦର ପ୍ରତୀକ ଦେଖାଇ । କୁକୁର ଛୁଆକୁ ଦେଖାଇ ଦେଇ ମଣିଷକୁ ଶିଖାନ୍ତି । ପୁଣି ସେମିତି ମଣିଷକୁ କାମରେ ଲଗାଇ କୁକୁର ଛୁଆକୁ ଜୀବନର ଧାରା ବୁଝାନ୍ତି ।

ସମ୍ପଦ ଏ ବିପଦ ସମସ୍ତଙ୍କ ପାଇଁ ସମାନ ମୂଲ୍ୟବାନ୍ । ବଡ ଓ ସାନ, ଇତର ପ୍ରାଣୀ ଓ ମଣିଷ ସମାନ ମୂଲ୍ୟବାନ୍ । ଦେହର ଅବୟବ ଭିତରେ କାଣି ଅଙ୍ଗୁଠିର ନଖ ଓ କାନର ବାଳ ଯେମିତି ଦେହର ଭିତରର ମସ୍ତିଷ୍କ ପରି ଅବା ପଞ୍ଜରା ଭିତରର ଫୁଲ୍ଫୁସ ପରି ଏକାପ୍ରକାରର ଦରକାରୀ ।

ରାସକେଲ୍ ସେଇ ଦରିଦ୍ର ଘରଟିକୁ ସାହାଭିତରେ ନାମଜାଦା କରିଦେଲାଣି । ତାହାର କହିବାର ଶକ୍ତି ଥିଲେ ସେ କହି ଦେଇଥାନ୍ତା ଯେ ରାସକେଲ୍ ପରି କୁକୁରଙ୍କର ସେବା ହେଉଛି ଜୀବନର ତାତ୍ପର୍ଯ୍ୟ ।

ରୋଗୀ ସେବା, ଗରିବର ସେବା, ଭୂମିହୀନଙ୍କର ସେବା, ଦୁର୍ଦ୍ଦଶାପନ୍ନ ବନ୍ୟା-ବାତ୍ୟାର ଆଘାତପ୍ରାପ୍ତ ଲୋକଙ୍କର ସେବା ଆମର ସେବାକାରୀଙ୍କର ମାନ ବଢାଏ ଓ ଖ୍ୟାତି ବଢାଏ ।

ସେମିତି ରୋଗିଣା କୁକୁର ବିଲେଇର ସେବା ଯତ୍ନ ଆଣିଦିଏ ସାର୍ଥକତା ।

କିନ୍ତୁ ଜଣେ ମାଛ ମାଂସ ଛାଡ଼ିଦେଲେ ବା ଜୀବହତ୍ୟାର ବିରୋଧ ହେଲେ ସେଇ ଯଶ ପାଇପାରେ ନାହିଁ ।

କାରଣ ସଂସାରଟା ହେଲା କର୍ମକ୍ଷେତ୍ର । ନାହିଁ ବା କରେ ନାହିଁ ଅବା ବିରୋଧ କରେ ଇତ୍ୟାଦି ନାସ୍ତିବାଚକ କାମ କଲେ କେହି ଯଶ ପାଇପାରିବ ନାହିଁ ।

ରାସକେଲ୍ ପାଇଁ ସେହି ଘରର ଆଖପାଖରେ କାସେଟ୍‌ରେ ଚଣ୍ଡୀପାଠ କଥା ପ୍ରଚାର ହେଲାଣି । ରାସକେଲ୍ ସପ୍ତଶତୀ ଚଣ୍ଡୀ ଶୁଣି ଶୁଣି ଭଲ ହୋଇଗଲା ବୋଲି ଜଣା ପଡ଼ିଲାଣି । ରାସକେଲ୍‌ର ମାଲିକ ଜଣେ ଧାର୍ମିକ ଲୋକ ବୋଲି ଲୋକେ ବୁଝି-ଗଲେଣି ।

ସଂସାରର ଧାର୍ମିକଲୋକ ଏମିତି ଗଢା ହୋଇଯାନ୍ତି । ସବୁ ଟଙ୍କା ଥଳିକ ନେଇ ଲୋକ ଧାର୍ମିକ ହୁଏ—କଳା କୋଟ ଓ ଗାଉନ୍‌ରେ ଓକିଲ ହେଲାପରି ।

ରାସକେଲ୍‌ର ମାଲିକ ଗଲା ଅଇଲାବେଳେ ଖବର ଦିଏ ପାଖ ପଡ଼ୋଶୀଙ୍କୁ ଯେ ରାସକେଲ୍ ପୂରା ଦମ୍ଭ ହୋଇଗଲା ପରେ ପୃଥିବୀରେ ମାଟି ଧରି ଶୋଇଛି ପଙ୍କ ଖାଇ ।

http://oaob.nitrkl.ac.in

—ବନ୍ଦ କରିବା ଦରକାର । ବାନ୍ଧ ରଖିବା ଦରକାର ।

—ବାନ୍ଧିଲେ ଗ୍ରସକେଲ୍ କାନ୍ଦୁଛି । ସେ ବନ୍ଦୀ ହେବ ନାହିଁ ।

—ବନ୍ଦୀ ହେବା କାହାକୁ ଭଲ ଲଗେ କି ? ଆମର ସ୍ତ୍ରୀ ପିଲା ଆମକୁ ବାନ୍ଧିଛନ୍ତି ବୋଲି ଆମେ ଫିଟି ପଳାଇବାକୁ ବ୍ୟସ୍ତ । ପୂଜାରୀ ଆସି ଆମକୁ ଠାକୁରଙ୍କ ଡୋରିରେ ବାନ୍ଧୁଛି ବୋଲି ଆମେ ଖସିଯିବାକୁ ତତ୍ପର ।

ଏମିତି ଗ୍ରସକେଲ୍‌ର ବିଷୟ ନେଇ ଜୀବନ ଦର୍ଶନ ଶିଖାଯାଏ ।

ଜୀବନର ଦର୍ଶନ ହେଉଛି ଏମିତି ବାଜେ କଥା । ଜୀବନ ମୂଲ୍ୟହୀନ । ଆଉ ଜୀବନର ଦର୍ଶନ ମଧ୍ୟ ସେମିତି ଅର୍ଥହୀନ । ଅଥଚ ଏଣେ ଲୋକ ପରସ୍ପର କୁହାକୁହି ହେଉଛନ୍ତି ଯେ ଜୀବନର ଦର୍ଶନ ନ ଥିବା ଓ ଜୀବନ-ଦର୍ଶନ ପଶୁଙ୍କୁ ଅବା ଗ୍ରସକେଲ ପରି ମଣିଷଙ୍କୁ ସାଜେ ।

ଏହିପରି ମଣିଷ ତାହାର ମନଦେଇ ଜୀବନ ଦର୍ଶନ ଗଢ଼ୁଛି । ଗୈର, ଖଣ୍ଡ, ଡକାଏତ୍, ଆତତାୟୀ, ମଣିଷମାରୁ ଓ ବିଭିନ୍ନ କିସମର ସାଧୁ ଅସାଧୁ ଜୀବନର ଦର୍ଶନ ଗଢ଼ି ତୋଳିଛନ୍ତି ।

ସଂସାରରେ ଜୀବନ ଦର୍ଶନର ସଂଖ୍ୟା ଶହେ ପାଞ୍ଚଶହ କୋଟି ହବ । ପ୍ରତ୍ୟେକ ମଣିଷର ଅଲଗା ଦେହର ରୂପ ଓ ମନର ରୂପ ପରି ଅଲଗା ଅଲଗା ଜୀବନ ଦର୍ଶନ ଥାଏ ।

ପଶୁପକ୍ଷୀଙ୍କର ଜୀବନ ଦର୍ଶନ ନ ଥାଏ । ତେଣୁ ସେମାନେ ପ୍ରକୃତରେ ଜ୍ଞାନୀ । ଅଳ୍ପ କଥା ବୁଝନ୍ତି । ଅଳ୍ପ କଥା ଜାଣନ୍ତି । ତେଣୁ ସେମାନେ ସବୁବେଳେ ଓ ସବୁଠାରେ ମଣିଷଙ୍କଠାରୁ ସରସ ।

ହେଲେ ଏବେ ତାଙ୍କ ପାଇଁ ପଞ୍ଜୁରି, ଚେନ୍ ବା ପେଡ଼ି ରହିଛି । ତାଙ୍କୁ ବନ୍ଦୀ କରି ରଖିବା ପାଇଁ ବନ୍ଦୀଶାଳା ରହିଛି ।

ସୃଷ୍ଟିରେ ସମସ୍ତଙ୍କୁ ବନ୍ଦୀ କରି ରଖାହୋଇଛି । ଭାରତର ରାଷ୍ଟ୍ରପତି, ପ୍ରଧାନ ମନ୍ତ୍ରୀ, ସର୍ବୋଚ୍ଚ ସଚିବଙ୍କଠାରୁ ଆରମ୍ଭକରି ସାଧାରଣ ପ୍ରକାର ଚାକର ଓ ଗୋଠି ଏବଂ କ୍ରୀତଦାସ ମଧ୍ୟ ବନ୍ଦୀ ।

ତଫାତ୍ ହେଉଛି ବନ୍ଦୀଶାଳାର ସୀମା ଓ ବନ୍ଧନର ଉପାୟ ।

ଏଇ ବନ୍ଦୀ ସମାଜରେ ସ୍ୱାଧୀନ କିଏ ? କେବଳ ବଣୁଆ ଜୀବଜନ୍ତୁ ସ୍ୱାଧୀନ । ବଣୁଆ ମଣିଷ ସ୍ୱାଧୀନ । ବଣରେ ପଡ଼ିଥିବା ସାଧୁସନ୍ଥ ସ୍ୱାଧୀନ । କିନ୍ତୁ ଏମାନେ ସଂଖ୍ୟାରେ ଅଳ୍ପ ଓ ତାଙ୍କର ପ୍ରଚାର କମ୍ । ତାଙ୍କର ଇତିହାସ ଲେଖା ହୋଇପାରିବ ନାହିଁ । ଫଳରେ ସଂସାରର ଇତିହାସ ହେଉଛି ବନ୍ଦୀ ସମାଜର ଇତିହାସ ।

http://oaob.nitrkl.ac.in

ନିଜର ଇଚ୍ଛାରେ ବା ଇଚ୍ଛା ବିରୁଦ୍ଧରେ ବନ୍ଦୀ ହୋଇଯିବାପରେ ବନ୍ଦୀର ଜୀବନକୁ କେଉଁ ବନ୍ଦୀ କିପରି ଭାବରେ ଗ୍ରହଣ କରିଛି, ତାହାର କାହାଣୀ ହେଉଛି ଇତିହାସ ।

ଠିକ୍ ଗ୍ରେଫକେଲ୍ ଘର କୁକୁରଛୁଆ ଯେଉଁ କାରଣରୁ ବନ୍ଦୀ ଓ ସ୍ୱାଧୀନତା ପାଇଲା ପରେ ସେ ଯେଉଁ କାରଣରୁ ବନ୍ଦୀଶାଳାକୁ ଫେରି ଝୁରି ହୁଏ ତାର ତୁଳନା ହେଉଛି ମଣିଷ ।

କେହି ଅପତ୍ୟ ବାଲ୍ ଗ୍ରସ୍ତ ନାହିଁ । ବନ୍ତି ଓ ମରୁଡ଼ିର ପ୍ରକୋପକୁ ହତାଦର କରି ନାହିଁ । ନିଜର ସାମର୍ଥ୍ୟ ଓ ଗୁଣରେ ଅଭାବକୁ ଘୃଣା କରି ନାହିଁ । ନିଜର ସ୍ତ୍ରୀ ରୂପଗୁଣ-ଯୌବନର ସମୀକ୍ଷା କରି ନାହିଁ । ନିଜର ପୁଅଝିଅ, ବୋହୂ, କୋଠି, ଅଜା ଓ ଶଶୁର କାହାରିକୁ ସେ ଘର ଗୃହିଣୀରେ ଗ୍ରହି ନାହିଁ ।

ଖାଲି କଥାରେ କଥା ପାଇଁ କହି ବୁଲୁଛି ଯେ ସେ ଦୁଃଖୀ—ସେ ଅଭାଗା । କିନ୍ତୁ ପ୍ରକୃତରେ ସେ ସୁଖୀ—ସେ ଭାଗ୍ୟବାନ୍ ।

ଏମିତି ଭିତରେ କଥାଏ ଓ ବାହାରେ କଥାଏ କରିପାରୁଥିବାରୁ ମଣିଷକୁ ଦେବତା କୁହାଯାଏ । ଯିଏ ଯେତେ ଅଧିକ ଅପରକୁ ଭୁଲାଇପାରେ ଓ ଦଶ ପାଞ୍ଚ ପ୍ରକାରର ରୂପ ଦେଖାଇପାରେ ସେ ସେତିକି ବଡ଼ ।

ସଂସାରରେ ଯିଏ ଯେତେ ବଡ଼ ସେ ସେତେ ଦୋଷରେ ଗଢ଼ା । ଯିଏ ଯେତେ ଶ୍ରେଷ୍ଠ ସେ ସେତିକି ଗୁଣରେ ଗଢ଼ା । ବଡ଼ ମଣିଷର ଦେବତା ସେମିତି ଦୋଷରେ ଭରିଥିବା—କପଡ଼ାର ଗୁଣ ତା'ର ସୂତାରୁ । ଦେବତାର ଗୁଣ ତାହାର ଭକ୍ତଠାରୁ ।

ଗ୍ରେଫକେଲ୍ ନିଜକୁ ପ୍ରକାଶ କରି ତାହାର ମାଆକୁ ଚହଲାଇ ଦିଏ । ବାପା ତାକୁ ପଠାଇ ଦେଇ ମା' ପେଟରୁ ମା କୋଳକୁ ଠେଲି ଦେଇଛି । ଗ୍ରେଫକେଲ୍ ଆସିଲା ଦିନୁ ତାହାର ମାଆ ତାକୁ ଆଖି ଆଗେ ଆଗେ ରଖିଥାଏ ।

କିଛି କାରଣରୁ ଗ୍ରେଫକେଲ୍‌ର ଭୟ ହେଲେ ସେ ହଠାତ୍ ଯେ ମାଆ କୋଳରେ ମୁଣ୍ଡଟି ରଖି ଶୋଇଯାଏ । ସେଇ ମୁଦା ଆଖିରେ ସେ କଣେଇ କଣେଇ ବିପଦ ଆପଦର ଖବର ନେଉଥାଏ ।

ଯେତେ ବଡ଼ ବିପଦ ଆସୁ ମାଆ ହେଉଛି ଜନ୍ମର ଓ ଆଶ୍ରୟର କେନ୍ଦ୍ରବିନ୍ଦୁ ।

ଆମର ଶାସ୍ତ୍ର ବି ସେଇକଥା କହେ । ନିଜର ଇଷ୍ଟଦେବୀଙ୍କୁ ମାଆର ରୂପରେ କଳ୍ପନା କରି ବା ଧ୍ୟାନ କରି ପୂଜାକଲେ ଇଷ୍ଟଦେବଙ୍କର ପୂଜାର ଫଳ ମିଳେ ।

ମଣିଷ ସମାଜର ବଡ଼ ଠାକୁରାଣୀ ମାଆ ଓ ମାଆର ରୂପ ଓ ଗୁଣରେ ନିଜର ସ୍ତ୍ରୀ । ସମସ୍ତଙ୍କ ହୃଦୟରେ ଆଦିମାତାରୁ ମାତୃରୂପରେ ରହିଛନ୍ତି ।

http://oaob.nitrkl.ac.in

ଏଇ ମାଆ ହେଉଛି ଗୋଟିଏ ବିଶ୍ୱାସ । କୁକୁରର ମା, ସାପର ମା, ବିଲେଇର ମା, କାଉ, ଶାଗୁଣାଙ୍କର ମାଆ ମଣିଷର ମାଆ ସାଙ୍ଗରେ ସମାନ ।

ଗ୍ରେସକେଲ୍ ବୁଝିପାରେ ଯେ ମାଆକୋଡ଼ରୁ କେହି ତାକୁ ଟାଣି ନେଇ ଶାସ୍ତି ଦେବ ନାହିଁ । ମାଆ ନିର୍ବିକାର ଗୃହିଣୀରେ ପିଲାକୁ ଧରି ଆଖି ବୁଜି ଦିଏ ।

ଏତିକି ହେଉଛି ସଂସାରରେ ଭରସା ଓ ଆଶ୍ରୟ । ଯାହାର କିଛି ନାହିଁ ସେ ମଧ୍ୟ ଅପରର ଭରସା ହୋଇପାରେ ଓ ଆଶ୍ରୟ ଦେଇପାରେ ।

କିନ୍ତୁ ଗ୍ରେସକେଲ୍ ଭାରି ଦୁଷ୍ଟ । ଲୋକ ଟିକିଏ ଅନ୍ୟମନସ୍କ ହେଲେ ସେ ମାଆ କୋଳରୁ ଉଠି ଚାଲିଯାଏ ବୁଲିବାକୁ । ବାହାରେ ନ ବୁଲିଲେ କି ମଣିଷ କି ପଶୁ କାହାରି ସ୍ୱାସ୍ଥ୍ୟ ଓ ମନ ଭଲ ରହେ ନାହିଁ ।

ନିଜ ଲୋକ ଘର ଛାଡ଼ି ପଦାରେ ବୁଲିଲେ ଘର ଲୋକଙ୍କର ମନ ଖରାପ ହୋଇଯାଏ । ସେମାନେ ସ୍ଥିର କରି ମତ ଦିଅନ୍ତି ଯେ ତାଙ୍କର ଲୋକର ଚରିତ୍ର ନଷ୍ଟ ହେଲା ।

ଏମିତି ଘର ଓ ବାହାରେ ଚରିତ୍ରର ମାପକାଠି ଅଲଗା । ବନ୍ଧୁ କହୁଛି ଘର ଛାଡ଼ିଲେ ଚରିତ୍ର ଭଲ ହୁଏ । ଘର ଲୋକ କହନ୍ତି ଯେ ଘରେ ରହିଲେ ଚରିତ୍ର ଭଲ ହୁଏ ।

ତେଣୁ ସ୍ୱାଧୀନ ପଶୁପକ୍ଷୀଙ୍କର ଚରିତ୍ର ମଣିଷର ଚରିତ୍ରଠାରୁ ସରସ । କୁକୁରର ଚରିତ୍ର ତା'ହାର ମାଲିକର ଚରିତ୍ରଠାରୁ ଭଲ ।

ତଳେ ରହୁଥିବା ଜୀବ ତାହାଠାରୁ ଉପରେ ରହୁଥିବା ଜୀବଠାରୁ ଅଧିକ ବିଚକ୍ଷଣ । ଏତିକି ସଂସାରରେ ସତ ଓ ପୃଥିବୀରେ ବି ସତ ।

ଚରିତ୍ର ନଷ୍ଟ କରି ଗ୍ରେସକେଲ୍ ପୁଣି ଅସୁସ୍ଥ ହେଲା । ଥରେ ସେ ଡାକ୍ତରଖାନା ଗଲା । ଅଶ୍ୱଥରେ ଖର୍ଚ୍ଚ କରାଇଲା । ମାଲିକ ହିସାବ କରୁଥାଏ ଯେ ଗ୍ରେସକେଲ୍ ତାକୁ ଟଙ୍କା ଶହେ ଖର୍ଚ୍ଚ କରାଇଦେଲାଣି । ଏଣେ ନିଜର ଗୀତଗୀତ, ଚରିତ୍ର ଓ ବ୍ୟବହାର ଠିକ୍ ରଖୁ ନାହିଁ ।

ସବୁ ଠିକ୍ ଠିକ୍ ଚାଲୁଥିଲେ ଏଇ ସଂସାରରେ ଦୁର୍ଭିକ୍ଷ ଓ ଅକାଳ ପଡ଼ୁନଥାନ୍ତା । ଓକିଲ ନ ଥାନ୍ତେ ଘର ଭଙ୍ଗାଇବା ପାଇଁ । ଡାକ୍ତର ନ ଥାନ୍ତେ ପେଟ ଭଙ୍ଗାଇବା ପାଇଁ । ବିଶ୍ୱରପଥ ନ ଥାନ୍ତେ ଅଭିଜନ ବୁଦ୍ଧି ନ ପାରି ନିଶାଖୋର ଅଶିକ୍ଷିତ ମଟରଡ୍ରାଇଭର ପରି ସଂସାରର ଫୁଲଫଳଧୂଳିକୁ କାଦୁଅରେ ମିଶାଇ ଦେବା ପାଇଁ ।

http://oaob.nitrkl.ac.in

ସୃଷ୍ଟି ଗ୍ଳୁଚ୍ଛି ଅପରର ଦୋଷକୁ ନେଇ । ଚନ୍ଦ୍ରରେ କଳଙ୍କ ରହିଛି ପରି ମଣିଷର ଦୋଷ, ଜୀବଜନ୍ତୁଙ୍କର ଦୋଷକୁ ଧରି ସଂସାର ଚାଲିଛି । ଏଇ ସୃଷ୍ଟିକୁ ଚଳାଇବା ପାଇଁ ଚୋର, ଷଣ୍ଢ, ଲମ୍ପଟୀ, କପଟି, କାନକୁହା, ଷଡଯନ୍ତ୍ରୀ, ଏକବାଗିଆ ଓ ପରର ମନ ଧରିବା ଅସଂଖ୍ୟ ପ୍ରକାରର ଚ୍ୟାସକେଲ୍‌ ବା ପାଜି ଦରକାର ।

ଏଇ ସମାଜ ହେଉଛି ପାଜିଙ୍କର । ଏଇ ଦୋଷକୁ ଯେତେ ନିନ୍ଦା କରାଯାଏ, ସେଥିରେ ପାଜି ବଂଶ ଧ୍ୱଂସ ହୋଇଯାଇଥାନ୍ତା । କିନ୍ତୁ ଏଇ ରୂପ ଓ ଭେକ ଦରକାର ବୋଲି ପାଜି ବଂଶ ରହିଛି—ଜବାଗ୍ରର ବଂଶ ବଞ୍ଚି ରହିଲା ପରି ।

ପ୍ରତ୍ୟେକ ସ୍ତ୍ରୀ ତାହାର ସ୍ୱାମୀଙ୍କ ପାଖରେ ସ୍ତାସକେଲ୍‌ । ପ୍ରତ୍ୟେକ ପୁରୁଷ ତାହାର ସ୍ତ୍ରୀ' ପାଖରେ ସ୍ତାସକେଲ୍‌ । ପଡାପଡୋଶୀ ସବୁଠାରେ ସ୍ତାସକେଲ୍‌ । କୁକୁରଛୁଆ ସ୍ତାସକେଲ୍‌ ପରି ସମସ୍ତେ ସମସ୍ତଙ୍କୁ ଗୋଟିଏ ରୂପ ଦେଖାଇ ମୁଗ୍ଧ କରିଦେଇ ଠକିବାରେ ଲାଗିଯାଆନ୍ତି ।

ଏଇ ଠକେଇ, ଧପ୍‌ପାବାଜି ହେଉଛି ସଂସାରର ବନ୍ଧନ । ଏଇଥିପାଇଁ ଦେବତାଙ୍କର ସୃଷ୍ଟି । ଧପ୍‌ପାବାଜି ନ ଥିଲେ ଠାକୁରଙ୍କର ମହିମା ନ ଥାନ୍ତା । ତେଣୁ ଦେଉଳରେ ଠାକୁରମାନେ କିଛି ନ ଜାଣିଲା ପରି ଓ ନ ବୁଝିଲା ପରି ଆଖି ପଲକ ନ ପକାଇ ଚାହିଁ ରହିଥାନ୍ତି ।

ଏକଥା ଯାହା, ସ୍ତାସକେଲ୍‌ର କାମ ମଧ୍ୟ ସେଇଆ । ସ୍ତାସକେଲ୍‌ର କାରବାର ଓ ବ୍ୟବହାର ଆମର ଅଭିଯୋଗର କାରଣ ।

ଅଭିଯୋଗ ନ ଥିଲେ ଆମ ମଣିଷ ସମାଜରେ କଥାବାର୍ତ୍ତା ଚାଲିପାରନ୍ତା ନାହିଁ ।

ଠାକୁରଙ୍କ ବିରୁଦ୍ଧରେ ଅଭିଯୋଗ, ସ୍ତ୍ରୀ ବିରୁଦ୍ଧରେ ଅଭିଯୋଗ, ବାପାଙ୍କ ବିରୁଦ୍ଧରେ ଅଭିଯୋଗକୁ ନେଇ ସଂସାର ଚାଲେ ।

ଯିଏ ଯାହା ବୁଝି ନ ପାରେ ସେତିକି ହେଉଛି ଅଭିଯୋଗର ମେରୁଦଣ୍ଡ ।

ମେଘ କାହିଁକି ନ ହେଲା ଓ ଯଦି ମେଘ ହେଲା ଏତେ ସକାଳୁ କାମ ବେଳେ କାହିଁକି ହେଲା, ଅଭି ନଈ କାହିଁକି ବଢିଲା ଓ ଲୋକ କାହିଁକି କ୍ଷତିଗ୍ରସ୍ତ ହେଲେ—ଏ ସବୁ ହେଲା ଅଭିଯୋଗ ।

ଅଭିଯୋଗ ହେଉଛି ସ୍ତାସକେଲ୍‌ର କାମ । ବିଜୁଳି କାହିଁ କାହିଁକି ହେଲା ଓ ଆମେ କ'ଣ କରିବୁ ଓ ଆମ ପିଲା କେମିତି ପଣ୍ଡିତ ଗଧରୁ ଘୋଡା ହେବେ । ଏଇ ଅଭିଯୋଗକୁ [illegible] ସମାଧାନ କରି ନ ପାରିଲେ ଗାଦିରୁ ଯାଆନ୍ତୁ । ଟଙ୍କା ନ ଯାଇ ଉଜୁର କଲେ ଆମେ ଆନ୍ଦୋଳନ କରିବୁ ଯେ ଆମର ଅଭିଯୋଗର ବିଚାର ହେଉ ନାହିଁ ।

http://oaob.nitrkl.ac.in

ରାସକେଲ୍ ଝସିଯାଏ । ଅଳ୍ପ ସମୟପରେ ରାସକେଲ୍‌ର ଭାଇଭଉଣୀଙ୍କର ପାଟି ଶୁଭେ । ସେମାନେ କାଉ ବଣିଙ୍କୁ ହୁରୁଡ଼ାଉଛନ୍ତି । ରାସକେଲ୍ ମାଆର ଭୁକା ଶୁଭେ—ସେ ବୁଲା ଗୋରୁଙ୍କୁ ତଡ଼ୁଛି । ଏମିତି ପୁଳାଏ ଦରକାରୀ କାମ କରିଦେଲେ ଭାତ ଝଡ଼ିବ । ପେଟର ଗୋବର ବାହାରିବ ଓ କୁକୁରମାନେ ତାଙ୍କର ଓଲୁ ମାଲିକ ଘରକୁ ଖାଇବାକୁ ଆସିବେ ।

ଦୟା ହେଉଛି ଗୋଟିଏ ପ୍ରକାରର ଓଲମି । ସ୍ନେହ, ଆଦର ଓ ସୋହାଗ ହେଉଛି ସେଇ ଓଲମିର ଫଳ ।

ଓଲମିର ଦଉଡ଼ିରେ ଏଇ ସଂସାରର ସମସ୍ତେ ଛନ୍ଦା ହୋଇ ଚଳୁଛନ୍ତି । ସମସ୍ତେ ସବୁ କଥା ଠିକ୍ ଠିକ୍ ବୁଝି ନିଜର ଓଲମି କଟାଇଦେଲେ ଆଉ ସଂସାର ଚାଲିପାରନ୍ତା ନାହିଁ ।

ଠାକୁରଙ୍କୁ ବୁଝିଗଲେ ସେଇ ବାଗରେ ଓଲମି ଚାଲିଯାନ୍ତା । ଓଲମିର ଧୂଆଁ ପଟଳ ହଟିଗଲେ ମନ-ଦର୍ପଣ 'ସଫା' ଦିଶନ୍ତା । ଠାକୁର ବି ଚାଲିଯାନ୍ତେ ଏଇ ସଂସାରରୁ ।

ଆଉ ଗୋଟିଏ ପଦାର୍ଥକୁ ଦେଖିବାପାଇଁ ଧୂଳି ଧୂଆଁର ଆଲୋକ ପ୍ରତିଫଳନ ଦରକାର । ଜ୍ଞାନ ପାଇବା ପାଇଁ ସେଇ ଏକା ଉପାୟ ।

ବୟସ ହେଲେ ଆଖିରେ ପରଳ ମାଡ଼େ । ଆଉ ଆଖିର ପିତୁଳା ବାହାରର ରୂପକୁ ଧରେ ନାହିଁ । ତେଣୁ ପ୍ରତ୍ୟେକ ମଣିଷ କଳାପଠା ପାର ହେଲେ ଅନ୍ଧ ହୋଇ-ଯାଏ ଓ ସାଙ୍ଗେ ସାଙ୍ଗେ ଇଶ୍ୱରଙ୍କୁ ନିଜର ଅନୁଭବକୁ ନେଇପାରେ ।

ରାସକେଲ୍‌ର କୁକୁର ପରିବାର ମାଲିକର ମନରୁ ଅଳନ୍ଧୁ ପୋଛି ଦେଉଥିଲେ । ପୋଷା କୁକୁରର ଦାବୀ ଅଛି ଯେମିତି ସ୍ୱାଧୀନତା ଅଛି ମଧ୍ୟ ସେମିତି । ସେ ମାଲିକର ଯେତିକ ତାହାର ମାଆର ମଧ୍ୟ ସେତିକ । ମାଲିକ ଯେମିତି ଇଶ୍ୱରଙ୍କର ପୋଷା ମାନି ମଧ୍ୟ ଇଶ୍ୱରଙ୍କର ନୁହେଁ ରାସକେଲ୍ ସେମିତି ପୋଷା ମାନିଲା ପରେ ବି ମାଲିକର ନୁହେଁ ।

ମାଲିକର କେହି ନାହିଁ ଓ କିଛି ନାହିଁ । ସବୁ ଭୂମି ଇଶ୍ୱରଙ୍କର । ସବୁ ଧନ-ଦୌଲତ ସେହି ଇଶ୍ୱରଙ୍କର । ସମସ୍ତ ପରିବାର ସେହି ଇଶ୍ୱରଙ୍କର । ତାହାର କିଛି ନାହିଁ । ପୁଣି ସବୁ ରହିଛି ।

ଏଇ ନ ଥାଇ ମଧ୍ୟ ଥିବା ପରି ମନେକରିବା ଓ ସବୁ ଥାଇ ମଧ୍ୟ ନିଃସ୍ୱ ହୋଇ ରହିବାର ନାମ ସଂସାର ।

ଏହାର ରୂପବନ୍ତ ଚିହ୍ନ ହେଉଛି ରାସକେଲ୍ ।

http://oaob.nitrkl.ac.in

ନିଜର ବ୍ୟବହାରରେ ସେ ଟାଣିନିଏ ଗୁଡ଼ା ଭିତରୁ ମନକୁ । ଆପଣା ଖୁସିଁ ଯାତ୍ରା କରିଦେଇ ସେ ଚାଲିଆସେ ଭିତରକୁ । ପବନ ପରି ସେ ଭେଦିଯାଏ ଚାରି-ଆଡ଼େ । ନିଜର ଲୋକଙ୍କଠାରୁ ଉପରକୁ ଚାଲିଯାଏ ।

ରସକେଲ୍‌ର ଦେହ ବିଗିଡ଼ିଗଲେ ନିଜକୁ ବି କଷ୍ଟ ହୁଏ ।

ରସକେଲ୍ ଭଲ ହୋଇଗଲା । ଥରେ ଭଲ ହୋଇଥିଲା । ଦ୍ୱିତୀୟ ଥର ଭଲ ହେଲା । ବୋଧହୁଏ ବାଳାରିଷ୍ଟ କଟିଗଲା । ଠାକୁରମାନେ ତାକୁ ବଞ୍ଚାଇ ଦେଲେ ।

ସତେ କ'ଣ ଠାକୁର ଏଇ କୁକୁରଛୁଅଙ୍କ କଥା ତାଙ୍କର ବଗୁର ଭିତରେ ଶୁଣି-ପାରନ୍ତି ? ଠାକୁର କ'ଣ ମଣିଷଙ୍କର ଏକା ? ନା, ପଶୁପକ୍ଷୀ, କୀଟପତଙ୍ଗ ସମସ୍ତଙ୍କର ?

ଠାକୁର କ'ଣ ଧନୀ ଘରେ, କୃପଣ ଘରେ ବୋମା ଫୁଟାଇ ଅଘାତ କରି ଲୁଟି କଲାବେଳେ ଡକାଇତଙ୍କର ସହାୟ ? ସେଇ ଡକାଇତକୁ ଧରି ଚୋରିମାଲ ଜବତ କଲାବେଳେ ସେ କ'ଣ ପୁଲିସର ସହାୟ ? ଚୋରିମାଲ ସରକାରୀ ମାଲଖାନାରୁ ଉଭେଇ ଗଲାବେଳେ ଠାକୁର କ'ଣ ଏଇ ହାତଉଠାକର ସହାୟ ? ଡକାଇତକୁ ମୁଦାଲଅତାକୁ ଖଲାସ କଲାବେଳେ ଠାକୁର କ'ଣ ଓକିଲର ସହାୟ ? ଅଭି ସେଇ ଖଲାସ କରାଇବା କାମ ପାଇଁ କିଛି ଦିଆନିଆ କରିବା ଦରକାର ହେଲେ ଠାକୁର କ'ଣ ଦେବା ଲୋକ ଓ ନେବା ଲୋକର ସହାୟ ?

ଅଭିଯୋଗ କର ଠାକୁର ମଧ୍ୟ ଗୋଟିଏ ମାୟା । ସଂସାରର ବଡ଼ ମାୟା ହେଉଛି ଦେବତାପ୍ରୀତି ଓ ଦେବତାଙ୍କର ବଡ଼ ଛଳନା ହେଉଛି ଭକ୍ତ—ଯିଏ ନିଜର ଘର-ସଂସାର ସହିତ ଧୋକାବାଜି କରି ଚାଲିଗଲା । ଠାକୁରଙ୍କ ପାଖକୁ ।

ସ୍ତ୍ରୀ ତାହାର ବାହାବେଦିର ବରକୁ ଗୋଇଠାମାରି ଆଉଜଣଙ୍କ ଘରେ 'ଦିଲ୍-କା ପ୍ୟାରର ରାଗିଣୀ ଗାଇ ରହିଗଲା ପରି ।

ପୁଅ ତାହାର ବାପା ଭାଇଙ୍କୁ ଛାଡ଼ି ଶ୍ୱଶୁରଘରେ ଆନନ୍ଦ ପାଇପାରେ ; କିନ୍ତୁ ବାପା ଭାଇଙ୍କର ସମ୍ପତ୍ତିରେ ନିଜର ଦାବି ଅଟଳ ରଖେ ।

ସ୍ୱାମୀ ଅଫିସରେ ମହିଳା କର୍ମଚାରୀଙ୍କର ମନ ନେବାକୁ ତତ୍ପର ଥିଲାବେଳେ ରସକେଲ୍ ଦଣ ଘରର ଖାତ ପରି ନିଜର ସ୍ତ୍ରୀକୁ ପାସୋରି ନ ଥାଏ ।

ଫେରିଆସେ ଅଟକଳ କରେ ଯେ ସ୍ତ୍ରୀ ସେମିତି ପତିପରାୟଣା ରହିଛି କି ନାହିଁ ।

http://oaob.nitrkl.ac.in

ବରଂ ଚୋର ଭଲ । ଚୋର ନେଇ ଚାଲିଯାଏ ନିଜର ଘର ଭରିବା ପାଇଁ । କିନ୍ତୁ ସାଧୁମାନେ ଚୋରଙ୍କଠାରୁ ଖରାପ । ସାଧୁ ରାସକେଲ୍ ପରି କୁକୁର ଛୁଆଠାରୁ ଖରାପ । କାରଣ ରାସକେଲ୍ ଯାହା ଚାହେଁ ସେଇଆ କରେ । ସାଧୁ ସନ୍ଥ ଯାହା ଚାହାନ୍ତି ତାହାର ଓଲଟା ଦେଖାନ୍ତି ।

ଓଲଟା କଥା ଦେଖାଇବା ସାଧୁଙ୍କର କାମ ଓ ଗୁଣ । ପ୍ରକୃତ କଥା ଦେଖାଇବା ଚୋର-ଠକଙ୍କର ଗୁଣ ।

ରାସକେଲ୍ ଦେଖାଇଦିଏ ଯେ ସେ ଗୋଟିଏ ସାଧୁ । ତାହାର ମନ ନିର୍ମଳ । ଈଶ୍ୱର ତାହାର ଆଡ଼େ କୃପା ଦୃଷ୍ଟି ରଖିଥାନ୍ତି । ଭଜନ ନ କରି ସେ ଭୋଜନ ପାଏ । ସାଧୁ ଭଜନ କରିସାରି ଭୋଜନକୁ ଭଜୁଥାଏ । ଈଶ୍ୱର ତାକୁ ପରୀକ୍ଷା କରିବାରେ ଲାଗିଥାନ୍ତି ।

ପରୀକ୍ଷାର ମାନେ ହେଲା ପାସ୍ ଓ ଫେଲ୍ । ଫଳ ଭଲ ଓ ଖରାପ । ପରୀକ୍ଷା ଦେଇ ଛାତ୍ର ଶହେରୁ ଶହେ କିଏ ବା କେତେଜଣ ପାଇବେ ? ସେଇଟା ପୁଣି ଈଶ୍ୱରଙ୍କର ପରୀକ୍ଷା ଖାତାରେ ?

ମଣିଷ ଠାକୁରଙ୍କୁ ପରୀକ୍ଷାକରି ଫେଲ୍ କରିଦେଉଛି । ଠାକୁରଙ୍କୁ ପୂଜା ଅର୍ଚ୍ଚନା ବନ୍ଦ କରିଦେଇ ଦଣ୍ଡ ଦେଉଛି । ବେଶି ରାଗିଗଲେ ଖାତା ବାତିଲ ହେଲାପରି ଠାକୁରଙ୍କୁ ଅସ୍ଥାନରୁ ଠେଲି ବାହାର କରିଦେଉଛି ।

ଦୁ'ବର୍ଷ ପରେ ଏଇ ପିଲା ତାହାର ଗର୍ହିତ ଆଚରଣ ପାଇଁ ପୁଣି ପରୀକ୍ଷା ଦେଇ-ପାରିବ । ଠାକୁର ଠାକୁରାଣୀ ସେମିତି ପୂଜା ଦେବତାରୁ ଅପୂଜା ଦେବତା ହୋଇ କିଛିଦିନ ପଡ଼ିରହିବେ । ଶେଷରେ ସ୍ୱପ୍ନରେ ଆଦେଶ ପାଇଲେ କେହି ଭକ୍ତ ଆସି ଅପୂଜା ଠାକୁରଙ୍କୁ ପୂଜା କରିବ । ଠାକୁର ମଧ୍ୟ ନୂଆ ଚକଡ଼ା ପାଇବେ ।

ଅଜର ଓ ଅମର ସର୍ବଶକ୍ତିମାନ୍ ଦେବଦେବୀଙ୍କର ଏହିପରି ଭାଗ୍ୟ ରହିଛି । ମଣିଷ ପରି ଅସଂଖ୍ୟ ଯୋନିର ଅସଂଖ୍ୟ ଜୀବଙ୍କର ମଧ୍ୟ ଏହିପରି ଭାଗ୍ୟ ରହିଛି ।

କିଏ ଜାଣେ ରାସକେଲ୍ ଜୀବନ ତାହାର ଆଗର ମାଲିକଙ୍କର ଓ ମାଲିକର ପରିବାରର ଲୋକଙ୍କର ଜୀବନ ସାଙ୍ଗରେ କେତେ ବର୍ଷ ଛିଲେ କେଉଁଠି ଗୁନ୍ଥି ହୋଇ ରହିଥିଲା ।

ସଂସାରର ଓ ଭାଗ୍ୟର ଚକ ପୁଣି କୁକୁର ଛୁଆ ଓ ମଣିଷଙ୍କୁ ଏକାଠି କରି-ଦେଇଛି ।

ମନରେ ତାଙ୍କର ପ୍ରଶ୍ନ ଆସେ—ଏଇ ରାସକେଲ୍ କ'ଣ ଦିନେ ମାଲିକର ବାପା, ଅଜା, ଭାଇ ସ୍ତ୍ରୀ ବା ପ୍ରେମିକ ଥିଲା ? ରାସକେଲ୍ କ'ଣ ମଣିଷ ଥିଲା ?

http://oaob.nitrkl.ac.in

ନା, 'ଗ୍ରସକେଲ୍'ର ମାଲିକ ଗୋଟିଏ କୁକୁର ଥିଲା ? ଦୁହିଁଙ୍କ ଭିତରେ କ'ଣ ଦେବା ଓ 'ନେବାର କିଛି ହିସାବ ବାକି ରହିଯାଇଛି ।

ଅସଂଖ୍ୟ ଚେତନଶୀଳ ଲୋକ ବିବିଧ ଉପାୟରେ ଏହି ହିସାବର ପୁରୁଣା ରୂପରେଖକୁ ଦେଖିବା ପାଇଁ ମନ୍ତ୍ର, ଉପଗ୍ରହ ଓ ସାଧନାଦ୍ୱାରା ଚେଷ୍ଟା କରି ପୁରା ସଫଳ ହୋଇପାରୁ ନାହାନ୍ତି । ସେଥିପାଇଁ ସେମାନେ ଉପଦେଶ ଦିଅନ୍ତି ଯେ ନିଜକୁ ଅପର ବୋଲି ମନେକରିପାରିଲେ ନିଜଠାରେ ଦେବତ୍ୱ ଦେଖିପାରିବ ।

ବିଲରୁ ବା ବାରିଆଡୁ ଫେରିଲାବେଳେ ଘଡଘଡିରେ ମରିବା ଓ କାରଣ ନ ଥାଇ ବିପଦରେ ପଡି ସର୍ବସ୍ୱାନ୍ତ ହୋଇଯିବା ଏଇ ପ୍ରକାରର ପୁରୁଣା ଅତୀତର ହିସାବ-ନିକାଶର ମାତ୍ର ଟିକିଏ ଚିହ୍ନ ।

ଆଜିର ଜୀବନ ହେଉଛି ଅତୀତର ଜୀବନର ଗୋଟାଏ ଚିହ୍ନପଟ୍ଟ—ଠିକ୍ ଚନ୍ଦ୍ରପରି । କେହି ଚନ୍ଦ୍ରଙ୍କର ପଛ ପାଖ ଦେଖି ନାହାନ୍ତି, କିନ୍ତୁ ଏଇ ଗୋଲକର ନିଶ୍ଚିତରେ ପଛପାଖ ରହିଛି । ସେମିତି ମଣିଷ ଜନ୍ମର ଆର ପାଟରେ ଫୁଲ ଗଛର ଚେର ପରି ଅନେକ କିଛି ରହିଛି ।

ତେଣୁ ପ୍ରତ୍ୟେକ ଜୀବ ଆମର ଭାଇ । ପ୍ରତ୍ୟେକ ଜୀବନ୍ତ ବୃକ୍ଷଲତା ଆମର ପରିବାର । ବାପା ମା' ଆମକୁ ପାଳିଲା ପରି ବୃକ୍ଷଲତା ଆମକୁ ମାଆ ପରି ସେବା ଯତ୍ନ ଓ ଧନ ଦେଇଯାଉଛନ୍ତି । ସେଇ ମାତୃରୂପରେ ଜୀବନ୍ତ ଓ ଜଡ ସମସ୍ତେ ରହିଛନ୍ତି । ଅହଲ୍ୟା ଦେବୀ ଶାପଗ୍ରସ୍ତ ହୋଇ ପଥର ପାଲଟିଥିଲେ । ପୁଣି ଶାପମୁକ୍ତ ହୋଇ ଦେବୀ ହେଲେ ।

ପଥର ବି ସଜୀବ । ଶାଳଗ୍ରାମ ସଜୀବ । ରୁଦ୍ରାକ୍ଷ ସଜୀବ । ମରଣ ପରେ ମଣିଷର ଆତ୍ମା ପ୍ରେତ ଆକାରରେ ସଜୀବ । ଏଇ ସଂସାରଟା ଜୀବନର ଓ ଆଲୋକର ଖେଳ ।

ଏଇ ଜୀବନ ଓ ଆଲୋକର ଅନ୍ୟ ନାମ ମାୟା । ନିଜର ଦେଖିବାର ଓ ବୁଝିବାର ଶକ୍ତି ଅନୁସାରେ ଯେ ଯେତେ ଦୂର ବୁଝିପାରେ ସେ ସେତିକି ପରିମାଣରେ ମାୟାରେ ବନ୍ଧା ବା ମାୟାରୁ ମୁକ୍ତ ।

ମଣିଷମାନଙ୍କୁ ଜୀବନର ତତ୍ତ୍ୱ ଶିଖାଇବା ପାଇଁ ସାଥୀ କୁକୁର ମାଆର ଜଠର ଭିତର ଦେଇ ଗ୍ରସକେଲ୍ ଆସିଥିଲା ସେଇ ପରିବାରକୁ ବୁଝାଇ ଦେଇ ଯିବାପାଇଁ ।

କୁକୁର ଗ୍ରସକେଲ୍ ପାଟରେ ସେଇ ମଣିଷଗୁଡିକ ପ୍ରକୃତରେ ଗ୍ରନ୍ଥ । ଯାହା ଜାଣି ନାହାନ୍ତି ସେତିକି ଜାଣିବେ । କେଲା ସାପଧରା ଶିଖାଇଦେବ । ମଟର ଡ୍ରାଇଭର ମଟର 'ଚଲାଇବା ଶିଖାଇଦେବ । ଆମର ସେବକ ଆମକୁ ଅନେକ କଥା ଶିଖାଇ ଦେବ । ଆମର ଆଶ୍ରିତ ମଧ୍ୟ ଆମକୁ ଶିଖାଇପାରିବ ।

http://oaob.nitrkl.ac.in

ଏଇ ସଂସାରରେ ସମସ୍ତେ ସମସ୍ତଙ୍କର ଗୁରୁ । ସମସ୍ତେ ସମସ୍ତଙ୍କର ଶିଷ୍ୟ । ସମସ୍ତେ ସମସ୍ତଙ୍କ ପାଖରେ ଋଣୀ । ସମସ୍ତେ ସମସ୍ତଙ୍କଠାରୁ ବଡ଼ । ନ ହେଲେ ଆମର ପୁଅ ବା ଗ୍ରନ୍ଥ ଆମର ହାକିମ ବା ହର୍ତ୍ତାକର୍ତ୍ତା ହୁଅନ୍ତା ନାହିଁ ।

ରାସକେଲ୍‌ର ଏହି ରୂପ ଦେଖିଗଲେ ରାସକେଲ୍‌କୁ କୋଡ଼କୁ ନିଆଯାଏ ।

—ଆରେ ଦେଖ, ବାବୁଙ୍କୁ । ଇସ୍, ସେ ରାସକେଲ୍‌କୁ ଆଣି କୋଡ଼ରେ ଥୋଇଲେଣି । ସେ ଯାଇ ମଇଲା ମସିଆରେ ବୁଢ଼ା ରୋଗରେ ଭୋଗୁଛି । ପେଟରେ କୃମି ହେଇଛି । ଓହ୍ଲାଅ ତାକୁ ।

—ଇଏ ପରା ଆମର ଆଗ ଜନ୍ମର ଭାଇ ।

—ଛାଡ଼ ମ ! ଭାଇ ଏଇଠି ପାଞ୍ଚ ସାତ ଅଛନ୍ତି । ସେଥିରେ ଅଣ୍ଟିଲା ନାହିଁ ଯେ କୁକୁର ଛୁଆ ଭାଇ ହେଇଗଲାଣି ।

—ଦିଅ ବାପା, ମତେ ଦିଅ ମୋର ରାସକେଲ୍‌କୁ । ତାକୁ ମୁଁ ପୋଷିଥିଲି । ସେ ମୋର ଭାଇ—ତୁମର ନୁହେଁ ।

ମାଲିକାଣୀ ପାଚିକଲେ ଯେ ତାହାର ଘର ଏଥର ଉଜୁଡ଼ିବ । ବେମାରିଆ ରାସକେଲ୍ ଏବେ ସମସ୍ତଙ୍କୁ ରୋଗରେ ଘାଣ୍ଟିବ । ମୁଣ୍ଡ ଖରାପ ହୋଇଗଲାଣି ସମସ୍ତଙ୍କର ।

—ରାସକେଲ୍ କୁକୁରଟାଏ ହେଇ ମଣିଷଙ୍କର ଭାଇ ହେଲାଣି । ଏମାନଙ୍କୁ ଡାକ୍ତରଖାନା ହତା ନ ଦେଖାଇଲେ ଦିନେ ରାସକେଲ୍ ଆସି ଖଟରେ ଶୋଇଥିବ ଓ ଏମାନେ ଯାଇ ତାହାର ଗୋଡ଼ ଘଷୁଥିବେ ।

ବିଚିତ୍ର ଦୃଶ୍ୟ ଘଟିଲାଣି ସେଇ ପରିବାରରେ । କିଏ କହିଲା ପାଖ ତାଳଗଛରୁ ସଇତାନ୍ କେତେବେଳେ ଓହ୍ଲାଇ ଆସି ସବାର ହେଇଗଲାଣି ଏମାନଙ୍କ ଉପରେ । ସଇତାନ୍ ଓ ଭୂତ ମଣିଷଙ୍କୁ ଧରନ୍ତି । ସେମାନେ କେବେ କୁକୁର ବିଲୁଆ ଓ ବିଲେଇଙ୍କୁ ଧରନ୍ତି ନାହିଁ ।

ଉଦ୍‌ବେଗରେ ଚାକରପିଲେ ଚାହିଁ ରହେ ମାଲିକଙ୍କର ପୂର୍ବଜନ୍ମର ଭାଇ ରାସକେଲ୍‌ର ମୁହଁକୁ । ମାଲିକାଣୀ ଚାହେଁ ମାଲିକଙ୍କ ମୁହଁକୁ ଠଉର କରିବା ପାଇଁ ଯେ ଏଇ ଲୋକ ସତରେ ଆଗ ଜନ୍ମରେ କ'ଣ ଥିଲା ?

ଘୋଡ଼ା ? ଗଧ ? କୁକୁର ? ବିରାଡ଼ି ? ନା କଙ୍କଡ଼ା ବିଛା ? କି ଗୋଧି ?

ପୂର୍ବ ଜନ୍ମ ଥିଲେ ଅବଶ୍ୟ ଏମିତି ଗୋଟାଏ କିଛି ଥିଲା । ହୁଏତ ଗୋଟାଏ ଭୂତ କି ପଥର ହେଇଥିଲା । ନ ହେଲେ ଏଇ ଜନ୍ମରେ ସେ ଏତେ ସନ୍ତାପ ହେଉଛି କାହିଁକି ?

http://oaob.nitrkl.ac.in

ଉଠ୍—ଉଠ୍ ରାସକେଲ୍ । ଆଣିଲି ବାଡ଼ିଟା । ବାବୁଙ୍କ ଅଳ୍ପ ତଳେ ।

ପାଟି ଶୁଣି ନଜର ନଁ। ପଡ଼ିବାରୁ ଓହ୍ଲାଇପଡ଼େ ବାବୁଙ୍କ କୋଡ଼ରୁ । ମାଆ କୋଡ଼ରେ ଆପଦ ନାହିଁ । ବାବୁଙ୍କ କୋଡ଼ରେ ବିପଦ ଅଛି ।

ସିନେମାର ଖେଳ ଶେଷ ହୋଇଯାଏ ବଜାରକୁ ଆଲୁଅ ଜଳି ଉଠିଲେ । ସେମିତି ପୂର୍ବ ଜନ୍ମର ସତ ମିଛର ସମ୍ବନ୍ଧ ଶେଷ ହୋଇଯାଏ ମାଲିକାଣୀଙ୍କର ହୁକୁମ ମିଳିଲେ । ମନର ତନ୍ଦ୍ରା ଛୁଟିଯାଏ । ପୁଣି ସଂସାର ଦେଖାଦିଏ—ରାସକେଲ୍ କୁକୁର ହୋଇ ଅଛିବ ହୋଇଯାଏ । ମାଲିକମାନେ ମଣିଷ ହୋଇ ଦେବତା ହେବାକୁ ଚାଲନ୍ତି ।

ଆହା, ହେଲେ ଏଇ ଦେଶର ମନ୍ତ୍ରୀ, ଏମ୍. ଏଲ୍. ଏ.ମାନେ କୁକୁର ଓ ମଣିଷର ଏଇ ଅଭେଦ ସମ୍ବନ୍ଧକୁ ବୁଝନ୍ତେ । ନଜେ ଅନ୍ତତଃ ଜ୍ଞାନ ପାଇଯାନ୍ତେ । କୁକୁରର ଛବି ରଖି ସେଥିରେ ଫୁଲ ଚନ୍ଦନ ଦେଇପାରନ୍ତେ ।

ଦୁ'ଗୋଡ଼ିଆ ଠାକୁର ଅଛନ୍ତି । ଚାରିହାତିଆ, ଆଠହାତିଆ ଠାକୁର ଅଛନ୍ତି । ଦଶ ଭୁଜ, ଚାରି ମୁଣ୍ଡ, ତିନି ପାଦ, ଦୁଇ ମୁହଁ, ଚାରି ମୁହଁ ଆଦି ଅନେକ ପ୍ରକାରର ଅଛନ୍ତି ।

ଗୋରୁ, ସିଂହ, ହାତୀ ଇତ୍ୟାଦି ଅନେକ ଚାରି ଗୋଡ଼ିଆ ଦେବତା ଅଛନ୍ତି । ସେମାନଙ୍କୁ ପୂଜା କରିହୁଏ—କେବଳ ମଣିଷକୁ ଛାଡ଼ି । ମଣିଷ ମଣିଷର ପୂଜା କରିପାରେ ନାହିଁ ବୋଲି ଚାରିଗୋଡ଼ିଆ ଜୀବର ପୂଜା କରେ ।

ମଣିଷ ମାଛ, କଇଁଚ, ବାରାହା ଆଦି ଅସଂଖ୍ୟ ପ୍ରକାରର ଜୀବଙ୍କର ପୂଜା କରିଛି । କିଏ ତାକୁ କ'ଣ ପାଇଁ ଏସବୁ ପୂଜା କରିବାକୁ ଶିଖାଇଛି ତାହାର ଉତ୍ତର ମଧ୍ୟ କେଉଁଠି ସ୍ପଷ୍ଟ ହୋଇ ନାହିଁ ।

ଏଇ ଯେଉଁ ମନର ଭାବ ଓ ସନ୍ଦେହମୋଚନ ହୋଇ ନ ଥିବା ଭାବର ପୂଜାକୁ କୁହାଯାଏ—ବିଶ୍ୱାସ । ଆଉ ସେଇ ଖୁବ୍ ଦମ୍ଭିଲ ହେଲେ ତାକୁ କୁହାଯାଏ ଆତ୍ମବିଶ୍ୱାସ ।

ଆତ୍ମବିଶ୍ୱାସ ଓ ଅନ୍ଧବିଶ୍ୱାସ ସମାନ । କିନ୍ତୁ ଅନ୍ଧବିଶ୍ୱାସ ଆମକୁ ଯେତେ ଶାନ୍ତି ଦିଏ ସେତିକି ଏଇ ସଂସାରରର ଅସୀମ ଜ୍ଞାନରୁ ମିଳିପାରେ ନାହିଁ ।

ରାସକେଲ୍‌କୁ ନଜର ଭାବିବା ହେଉଛି ଅନ୍ଧବିଶ୍ୱାସ । ଆଉ କେବଳ ଏଇ ଅନ୍ଧ ବିଶ୍ୱାସ ପାଇଁ ରାସକେଲ୍ ସେଇ ପରିବାର ଭିତରେ ଟେଲିଭିଜନ୍‌ରେ ସିନେମା ଦେଖାଉଥିଲା । ମିଛ ସତ ହୋଇଯାଉଥିଲା । ସତ ମଧ୍ୟ ମିଛ ହୋଇଯାଉଥିଲା ।

ଈଶ୍ୱର ଜଣେ ବଡ଼ ଓକିଲ । ସେ ମିଛକୁ ସତ ଓ ସତକୁ ମିଛ କରିପାରନ୍ତି । ମନକଲେ ସବୁ ଦେଇପାରନ୍ତି । ପୁଣି ସେ କିଛି ନ ଦେଇ ଜଳକା ପରି ଚାହିଁ ରହନ୍ତି ।

http://oaob.nitrkl.ac.in

ସମସ୍ତେ ତାଙ୍କର । ସେ କାହାର ନୁହନ୍ତି ।

ସାଇକେଲ୍ ସମସ୍ତଙ୍କର । ପୁଣି ସାଇକେଲ୍ କାହାର ନୁହେଁ । ସମସ୍ତେ ସାଇକେଲ୍‌କୁ ଖୋଜନ୍ତି ଓ ପାଖରେ ରଖିବାକୁ ଅଧୈର୍ଯ୍ୟ ହୁଅନ୍ତି । କିନ୍ତୁ ସାଇକେଲ୍ ଖୋଜେ ଆରାମ ପୋଷାକର ପଙ୍କ ଓ ସଡ଼ା କଙ୍କଡ଼ା ।

ଠାକୁରେ ଏମିତି ଭକ୍ତଙ୍କୁ ଆଡ଼େଇ ଦେଇ ବେଶ୍ୟା, ବଟପାଡ଼ି ଓ ବେଇମାନଙ୍କୁ ନଜର କରି ଦେବତା ଓ ଭକ୍ତ ସମ୍ବନ୍ଧ ଗଢ଼ି କୁହାନ୍ତି ଯେ ଏମାନେ ତାଙ୍କର ଯୁଗ-ଯୁଗର ଭକ୍ତ ।

ପୁରୁଣା ଜନ୍ମରେ ଖାଲି କୁକୁର ଛୁଆ ଓ ମଣିଷ ଛୁଆର ସମ୍ବନ୍ଧ ନୁହେଁ ଠାକୁର ଓ ଭକ୍ତର ସମ୍ବନ୍ଧ ରହିଥିଲା । ଖାଲି ତଫାତ୍ ଏତିକି ଯେ ଠାକୁର ନିଜେ ସାରଥି ହୋଇ ସାଥିର ସେବକ ହେଉଥିଲେ କି ସାଥି ଜୋଡ଼ ହାତରେ ସେବା କରି ସେବକ ହେଉଥିଲା ତାହାର ସମ୍ବାଦ ମିଳେ ନାହିଁ ।

ପାଗଳ ହୋଇ ନ ପାରିଲେ ଏ ସବୁର ଖବର କେହି ଖୋଜିବ ନାହିଁ କିମ୍ବା ପାଇବ ନାହିଁ ।

ପାଗଳ ନ ହେଲେ ଈଶ୍ୱର ମିଳନ୍ତି ନାହିଁ । ପାଗଳଙ୍କ ଭିତରେ ଯେତେଜଣ ସାଧୁସନ୍ଥ ରହିଛନ୍ତି ଭଲମଣିଷରେ ସେତେ ନାହାନ୍ତି ।

କିନ୍ତୁ ମଣିଷ ଯେମିତି ଠାକୁରଙ୍କୁ ଡରେ, ଠାକୁର ସେମିତି ସୁସ୍ଥ ଚେତନା ଥିବା ମଣିଷକୁ ଡରନ୍ତି । ସେ ଖୋଜନ୍ତି ପାଗଳଙ୍କୁ ।

ଧନ ପାଇଁ ପାଗଳ, ନାମ ଓ ଯଶ ପାଇଁ ପାଗଳ, ପୂଜାପାଠ ପାଇଁ ପାଗଳ ଲୋକଙ୍କୁ । ଗୃହୀଠାରୁ ଅଧିକ ଅଲସୁଆ ଭଜନଖିଆ ଲୋକଙ୍କୁ । ଯୋଦ୍ଧାଠାରୁ ଭୀରୁଙ୍କୁ ଠାକୁର ବେଶି ଆଦର କରନ୍ତି ।

ସାଇକେଲ୍‌ର ମାଆ ମଣିଷ ମାଆ ପରି ରୋଗିଣାଙ୍କୁ ଆଦର କରି ପାଖରେ ରଖେ । ଠାକୁରମାନେ ସେମିତି ସବୁ ପ୍ରକାରର କପଟବାଲା, ଫେଲବାଲା, ଫେରବାଲାଙ୍କୁ ପୋଷିପାଳି ଉପରକୁ ଉଠାଇ ନିଜେ ବଡ଼ ଲୋକ ହୋଇଯାନ୍ତି । ସବୁ ନକଲିକୁ ଅସଲି ରଙ୍ଗଦେଇ ଈଶ୍ୱର ଏଇ ସଂସାରରେ କୀର୍ତ୍ତିମାତ୍ର କରନ୍ତି ।

ସାଇକେଲ୍ ହୋଇଗଲାଣି ସେଇ ପରିବାରର ଇସକାପାନ ଟିକା—

କଳାପାନ ଟିକା ପରି ସାଇକେଲ୍ ନିର୍ଜୀବ । କିନ୍ତୁ ଏଇ ନିର୍ଜୀବ ମଣିଷର ସୁନା ଗହଣା ବା ହୀରାମୁଦି ପରି ଯାହାର ହୋଇଗଲା ସେ ହେଲା ଧନୀ । ସାଇକେଲର ମାଲିକ ସାଇକେଲ୍‌କୁ ପାଇ ଧନୀ ।

http://oaob.nitrkl.ac.in

ଅଣ୍ଟାଏ ବଣ, ପୁଳାଏ ଜମି, ଗୋଟିଏ ଗଡ଼ିଆ ଓ ଗୃଚ୍ଛେଟି ନଡ଼ିଆ ଗଛକୁ ଧନ କୁହାଯାଏ । ଅଶିକ୍ଷିତା ମାଅକୁ ମାଆ ରୂପରେ ପୂଜା କରାଯାଏ । ଝଳଙ୍ଗା ସ୍ତ୍ରୀକୁ ମଧ୍ୟ ପୂଜା କରାଯାଏ ।

ସେମିତି କରାଯାଏ ନିଜର ବାନ୍ଦୁଙ୍ଗା ପିଲାଙ୍କୁ ଓ ନିଜର ସବୁ ଦୋଷକୁ । ମଣିଷ କେବେହେଲେ ନିଜ ସ୍ୱାର୍ଥରେ ଓ ନିଜର ପଦାର୍ଥ ଉପରେ ନ୍ୟାୟ ବିଚାର କରିପାରେ ନାହିଁ ।

ସାରା ଭାରତରେ ମୁଖ୍ୟ ବିଚାରପତିମାନେ ତାଙ୍କର ପୁଅଙ୍କୁ ବିଚାରପତି ହେବାପାଇଁ ମନୋନୟନ କରି ପଠାଇଲେ । ଅନେକ ମଧ୍ୟ ହୋଇଗଲେ । ଅନେକ ମୁଖ୍ୟମନ୍ତ୍ରୀ ତାଙ୍କର ମଟର ଡ୍ରାଇଭର, ପୂଝାରି ଓ ଗୁମାସ୍ତାମାନଙ୍କର ପିଲାଙ୍କୁ ଉଚ୍ଚ ପଦପଦବୀରେ ରଖିଦେଇଗଲେ ।

ଏ ସବୁ ହେଉଛି କଲମର ବାହାଦୁରି । କଲମର ଗାରରେ ଅନେକ ଭାଗ୍ୟ ବଦଳିଯାଏ ।

ଲୋକଦେଖାକୁ କୁହାଯାଏ ଯେ ମଣିଷ ପୂଜାପାଠ, ଆରାଧନା ଅର୍ଚ୍ଚନା କରି ଭଗବାନଙ୍କଠାରୁ ନ୍ୟାୟ ମାଗୁଛି ଓ ଭଗବାନଙ୍କର ସୃଷ୍ଟିକୁ ନ୍ୟାୟ ଦେବ ବୋଲି କହୁଛି ।

କିନ୍ତୁ ନ୍ୟାୟକୁ ଲୋପ କରିଦେଇଛନ୍ତି ଏଇସବୁ କଥାକୁହା ରୂପ-ସଇତାନ୍‌ମାନେ ।

ଗୁଣ୍ଡା ତସ୍କର ନ ଥିଲେ ଏଭଳି ଜୀବାଣୁଗୁଡ଼ାକ ମରିଯାନ୍ତେ । ମାଟିର ଜଆ ପରି ପୁରା ମାଟି ତାଙ୍କର ଘାଣ୍ଟି ବାଟେ ଖାଇଯାନ୍ତେ ।

ଶିକ୍ଷା ବିଭାଗର ପିଲା ଉପରକୁ ଉଠୁଛନ୍ତି ବୋଲି ଦେଶର ଖବରକାଗଜ କହୁଛି । ଶିକ୍ଷା ବିଭାଗରେ ନ ଥିବା ଲୋକଙ୍କର ପିଲା ପାଠ—ବାନ୍ଦୁଙ୍ଗା ବୋଲି ବୁଝାଯାଉଛି ।

ଫଳରେ ଚାଲୁଛି ଛୁଆ । ରାସକେଲ୍ ଆମପରି ଚୋରଙ୍କର ଘର ଜାଣିବା ଛଳରେ ସବୁ ସାଧୁ ସନ୍ଥଙ୍କୁ ଦାନ୍ତ ଦେଖାଇ ତଡ଼ିଦେଲା ପରି ।

ରାସକେଲ୍‌କୁ ଦେଖିଲେ ପ୍ରଚଳିତ ଓଡ଼ିଶାର ମାନଚିତ୍ର ଓ ବ୍ୟକ୍ତି ଚରିତ୍ର ଦିଶିଯାଏ । ସାରା ଓଡ଼ିଶାର ଗାଡ଼ିମଟର ଅସମ୍ଭବ ଭିଡ଼ ବୋଝ ରାସ୍ତାଏ ରାସ୍ତାଏ ଚଳେ । କିନ୍ତୁ ଗାଡ଼ି ବାଦ ଦେଇ ଷ୍ଟେସନକୁ ଗଲାବେଳେ ଦଶେ କଣ୍ଡକ୍ଟରର ଟିକଟ ଖାତାରେ ଅଳ୍ପ ଟଙ୍କା ଉଠିଛି ।

ପକେଟ ବୋଝେଇ ଟଙ୍କା ନେଇ ବସ୍ କଣ୍ଡକ୍ଟର ଓହ୍ଲାଇଯାଏ । ରିପୋର୍ଟ କରିଦିଏ ଯେ ରାସ୍ତାରେ ବେଶିଲୋକ ଆସିଲେ ନାହିଁ । ମଲ୍ଲୀ, ବଉଳ, ଚମ୍ପା ଫୁଲ

http://oaob.nitrkl.ac.in

ଧରି ଗ୍ରୀକଲ୍‌ବେଳେ ବସ ବୋହି ଗ୍ରୀକଲ୍ ପରି କଣ୍ଡକ୍ଟରର ପକେଟରୁ କଣ୍ଡା ବାଟେ ଅଳ୍ପ ବହୁତ ପ୍ରତ୍ୟେକ ପାଦରେ ଝଡ଼ିଯାଏ ।

ସମସ୍ତେ ଏହିସବୁ ପାଇ ନିଜର ପୈତୃକ ଝୁଲାବୁହା ଧନ ପରି ବ୍ୟବହାର କରନ୍ତି । ଦାମିକା ଘିଅ ଜାଳନ୍ତି । ସୁବାସ ସେବନବତୀ ଧୂଅନ୍ତି । ନିଜର ସମୃଦ୍ଧିକୁ ଠାକୁରଙ୍କର ଦୟା କହନ୍ତି ।

ଏଣେ ବୈଠକଖାନାରେ ବସି ମନ୍ତବ୍ୟ କରନ୍ତି ଯେ ସାରା ଦେଶ ମାଟି ହୋଇଯାଉଛି । ଘରେ ନାତିକୁ ପୂଜା ପୋଡ଼ିପାଡ଼ି ଦେଇ ଧର୍ମସମ୍ବନ୍ଧରେ ବକ୍ତୃତା କରି ନିଜକୁ ଦେବତା ପରି ଦେଖାଇ ହେବା ହେଲା ଗ୍ରପକେଲ୍ ପରି କୁକୁରଙ୍କର କାମ ।

ନିଜର ଫାନ୍ଦାକୁ ଜଗି ରହିବା କୁକୁର ଜନ୍ତୁଆର ଧର୍ମ । ବଡ଼ ବଡ଼ ମଣିଷଙ୍କର କାମ । ଏକା କାମ କରି ନିଜକୁ ଜନ୍ତୁଆ ଖାଇବ କୁକୁରକୁ ଅନ୍ତୁଆ କରିବା ହେଲା ମଣିଷର ଧର୍ମ ।

ବିଶ୍ୱବିଦ୍ୟାଳୟରେ କଥା ଉଠୁଛି ଲୋକର ବୟସ ନେଇ । ଜାତକ ଦେଖାଇଲା ବେଳେ ଗୋଟାଏ ବୟସ, ସ୍କୁଲରେ ନାଁ ଲେଖାଇଲା ବେଳେ ଗୋଟାଏ ବୟସ ଓ ଶେଷକୁ ଚାକିରୀ ସରିଲାବେଳକୁ ସତ୍ୟପାଠ ଯେ ଭୁଲ ବୟସ ଲେଖା ହୋଇଯାଇଛି ।

ଏହି ସବୁ ବୟସ କମ୍ ବେଶି କରନ୍ତି ପାଠୁଆ ଠକମାନେ । ଗୁଣ୍ଡା ବା ସମାଜ-ବିରୋଧୀ ଏକଥା କରେ ନାହିଁ । ଏସବୁ ମଧ୍ୟ ଗ୍ରପକେଲ୍‌ର ଦରକାର ପଡ଼େ ନାହିଁ ।

ଗ୍ରପକେଲ୍ ତାହାର ଶ୍ରେଷ୍ଠ ଜୀବନରେ ଦେଖାଉଥିଲା ବଡ଼ ମଣିଷଙ୍କର ବଡ଼ପଣକୁ । ସେ ଖୋସାମଦ୍ କରେ । ଏଇଟା ତାହାର ସ୍ୱଭାବ । ଭଲ ପାଇଲେ କିମ୍ବା ଭଲପାଇବା ଖୋଜିଲେ ଗ୍ରପକେଲ୍ ଖୋସାମଦ୍ ଆରମ୍ଭ କରିଦିଏ ।

କିନ୍ତୁ ଗ୍ରପକେଲ ର ମାଲିକ ତାହାର ମନର ଅନେକ ପ୍ରକାରର ପାଞ୍ଚ ସାଇତି ଖୋସାମଦ୍ କରେ । ଖୋସାମଦ୍ କଲାବେଳେ ସେ ଗ୍ରପକେଲ୍‌କୁ ଅନୁକରଣ କରିବାକୁ ଚେଷ୍ଟାକରେ । ଦେଖିଲେ ଉତ୍ତରାଞ୍ଚଳର ଲୋକ ପରି କୁଣ୍ଢାଇ ପକାଏ । ରେଲ ଷ୍ଟେସନ୍ ଓ ଉଡ଼ାଜାହାଜ ପଡ଼ିଆରେ ଫୁଲମାଳ ଓ ଫୁଲ ତୋଡ଼ା ନେଇ ପହଞ୍ଚେ ।

ମନରେ ପ୍ରତିଜ୍ଞା କରୁଥାଏ ଯେ ସୁବିଧା ମିଳିବା ସାଙ୍ଗେ ସାଙ୍ଗେ ସେ ନିଜର ଖୋସାମଦ୍‌ର ପ୍ରତିଶୋଧ ନେବ ଓ ବିଶ୍ୱାସଘାତକତା କରିବ ।

ଏଇଠି ଗ୍ରପକେଲ୍ ପରି କୁକୁର ଓ ଗ୍ରପକେଲ ପରି ମଣିଷ ଅଲଗା ହୋଇଯାନ୍ତି । ଜଣେ ଲେଖେ କୃତଘ୍ନତା ଓ ବିଶ୍ୱାସ ଘାତକତାର ଇତିହାସ ଓ ଆରଟି କହିଯାଏ କୃତଜ୍ଞତା ଓ ବିଶ୍ୱାସର ସରଳ କଥାଟିଏ ।

http://oaob.nitrkl.ac.in

ରାସକେଲ୍‌ର ମାଆ ବଡ଼ ବୁଦ୍ଧିମତୀ ନିଜର ପିଲା ବିଷୟରେ । ସେ ରାସକେଲ୍‌କୁ ସୁଙ୍ଘ ପାଏ । ସୁବିଧା ପାଇଲେ ରାସକେଲ୍‌କୁ କୋଡ଼ରେ ଶୁଆଏ ।

ରାସକେଲ୍‌ର ମାଲିକ ଘରେ ପିଲିକୁ ଅନ୍ୟକୁ ଦେଇ ମାଆମାନେ ଚାଲିଯାନ୍ତି ତାଙ୍କର କାମରେ । ରାସକେଲ୍ ଆସିଥିଲା ମାଆ କୋଳକୁ ମାଆ ପାଖରେ କୁକୁରଟିଏ ହେବ ବୋଲି । ରାସକେଲ୍ ଘରେ ଥିଲା ଆସେ ମାଆକୋଳକୁ ଅନ୍ୟ ପାଖରେ ମଣିଷ ହବ ବୋଲି ।

ସେଇ ମଣିଷ ହୁଏ କୁକୁରଙ୍କର ପ୍ରଭୁ—ଗାଡ଼ିମ—ହାକିମ ।

ଘର ବାହାର ଗୁଣଅଙ୍ଗେ ପ୍ରଭୁଭକ୍ତ ବିଶ୍ୱାସୀ କୁକୁରଙ୍କ ଉପରେ ରହିଛନ୍ତି ଅବିଶ୍ୱାସୀ ହାକିମ । ଲୁଚେଇ ଛପେଇ ଲେଖିଯାଇଛନ୍ତି ତରସଲିପି । ନିଜର ଟଙ୍କାଟିଏ କମିଗଲେ ଆକାଶ ଫାଟିବା କନ୍ଦେଇ ଦେଉଛନ୍ତି । କିନ୍ତୁ ପରର ପେଟକୁ ମାଡ଼ ମାରିବାରେ କୁଣ୍ଠା ନାହିଁ ।

ମଣିଷ ନିଜ ଲୋକ ଓ ପାଖ ଲୋକଙ୍କ ସହିତ ଧୋକାବାଜି ନ କଲେ ସେ ମଣିଷ ହେବ କେମିତି ?

ସେ ମଣିଷ ହୋଇଥିବାରୁ ଅନ୍ୟାୟ ଆଣି କୁଟାଇ ଦେଇଥାଏ ବଦଳାରେ ନ୍ୟାୟ ମାଗିବା ପାଇଁ ।

ଏଇ ନ୍ୟାୟକୁ ଅସୁଲ କରିବା ପାଇଁ ଟକ୍କ, ହଜାର, ଲକ୍ଷ, ମିହଲ ଚାଲିଛି । ସେଠି ମିସଲରେ ବସି ମିହଲଧାରୀ ନିଜର ପେଟର ଚର୍ବି ମାପୁଛି । ନିଜର ଜମା ଟଙ୍କାକୁ ଗଣୁଛି । ତାହାର ଦରକାର ହେଉଛି ପରର ରକ୍ତ । ମଶା ମାଛିଙ୍କୁ ଜାଲ ଓ ମଶାରି ଦେଇ ଅଟକାଇ ହେବ, କିନ୍ତୁ ମିସଲଧାରୀ ହୋଇଛି ଜୋକ, ଛାରପୋକ ପରି ଜୀବ ।

ଏଇ ସଂସାରର ଅସଂଖ୍ୟ ଦୁଃଖକୁ ଏଇ ମିସଲଧାରୀମାନେ ପେଟ ଭରି କରି ଫଳାଉଛନ୍ତି । ବିଲରୁ ଅନାବନା ଘାସ ଓ ବାଲୁଙ୍ଗାରେ ମାଟିର ଗଛ ହେଲା ପରି ମଣିଷ ତାହାର ବୁଦ୍ଧିରେ ଗୁପ୍ତ କାମ ଦେଖାଇ ଆଣି ଗଢ଼େଇ ଦେଉଛି ଅନ୍ୟାୟ ଓ ଅନୀତିର ଅନେକ ପ୍ରକାରର ଗଛ ।

ମିସଲ ଆଗପଛରେ ଓ ଗୁଣଅଙ୍ଗେ ବେଢ଼ି ରହିଥିବା ଅସଂଖ୍ୟ ଚାରବାହା ଓ ବୁଦ୍ଧିବାଣ୍ଟା ଲୋକ ଏଥିରୁ ଖାଦକା କରନ୍ତି ପାରାଦୀପ ବନ୍ଦରର ମାଛଧରା ଟ୍ରଲର ଆସିଲେ ଯେମିତି ଅସଂଖ୍ୟ ପ୍ରକାରର କାମ, ଶିଳ୍ପ ଓ ବେଉସା ଫିଟେ ।

ପ୍ରତ୍ୟେକ କାମକୁ ଅଲଗା ଦେଖିଲେ ବୁଝାଯାଏ ଯେ ସେଗୁଡ଼ିକ ସାଧୁତା ଓ ସଚ୍ଚୋଟପଣିଆର ପରିଶ୍ରମ ।

http://oaob.nitrkl.ac.in

ଡକେଇତକୁ ଋକ୍‌ସାରେ ବୋହି ଝାଳ ବୁହାଇ ପେଟ ପୋଷିଲାପରି ମହନ୍ତ ପରିଶ୍ରମ ।

କିନ୍ତୁ ସେ ସବୁ ହେଉଛି ମଣିଷର ଶୋଷଣ ଯନ୍ତ୍ରର କଳକବ୍‌ଜା ଓ କାରିଗର ।

ରିସକେଲ୍‌ ମାଆ କୋଳରେ ଶୋଇ ଶୋଇ ଚାହିଁଥାଏ । ରିକ୍‌ସା ଯେମିତି ଜାଣେ ନାହିଁ, ଗଧ ଯେମିତି ବୁଝେ ନାହିଁ ଓ ରିକ୍‌ସାବାଲା ଯେମିତି ଠଉରେଇପାରେ ନାହିଁ ସେ କାହା ପାଇଁ କଷ୍ଟ କରୁଛି ।

ହାକିମ ବୁଝିପାରେ ନାହିଁ ତାହାର ଆଗରେ ଫେରାଦ ହେଉଥିବା ଲୋକକୁ । ସେ ନ୍ୟାୟ ଦେବାକୁ ଚାହେଁ ନାହିଁ । ସେ ଚାହୁଁଛି ନିଜକୁ ନ୍ୟାୟ ଦେବା ପାଇଁ । ପାଣି ବାଡ଼େଇ ଦି’ପଇସା ନେଇ ଘରକୁ ଫେରି ନିଜକୁ ତାରିଫ୍‌ କରିବା ପାଇଁ ।

ସ୍ତ୍ରୀ ଖୁସି ହୋଇଯାଏ । ପିଲାମାନେ ଦାଣ୍ଡ ଦୁଆର ଜଗି ବସିଥାନ୍ତି । ବାପା ତାହାର ଅର୍ଜନ ନେଇ ଫେରିଛି । ଚଢ଼େଇ ତାହାର ଆଧାର ଆଣିଛି ବୁଲିବୁଲି ଖୋଜି । ରିସକେଲ୍‌ର ମାଆ ଶିକାର କରି ଆଣିଛି ଗୋଟିଏ ଚଢ଼େଇ । ପିଲାମାନେ ଖାଇବେ ।

ରିସକେଲ୍‌ର ମାଆ ଦେଖାଇଦିଏ ତାହାର ଘରର ମାଲିକଙ୍କୁ ଯେ ତାହାର ଛୁଆ ଆଇଁଷ ଖୋଜୁଛନ୍ତି । ରକ୍ତ, ମାଂସ ଓ ହାଡ଼ ଖୋଜୁଛନ୍ତି । ସେଇ ଶିକାର ପାଇଲେ ତେଉଁ ଶିକାରର ବଡ଼ ଭାଗ ଧରିବାପାଇଁ ମାଡ଼ ଗୋଳ ହେଇଯାଉଛନ୍ତି ।

ମଣିଷର ସେମିତି ଯେତେବେଳେ ଶିକାର ଘରକୁ ଆସେ ସେତେବେଳେ ଯେଉଁ ଶିକାରର ଯେତେ ରକ୍ତ, ମାଂସ ଓ ଚର୍ବି ଥାଏ ସେଇ ଘରେ ସେତେ ଉତ୍ସବ— ସେଠି ସେତେ ଜୋରରେ ଘଣ୍ଟି ବାଜେ ।

ବାହାରୁ ମାଲ ଯାହାର ଯେତେ ଅଧିକ ଆସେ ଓ ଯେତେ କମ୍‌ ପରିଶ୍ରମରେ ଯେତେ ଅଧିକ ଆସେ ସେ ହୁଏ ସେତେ ବଡ଼ ଈଶ୍ୱର ଭକ୍ତ ।

ଭକ୍ତ ହେଉଛି ଏହି ପ୍ରକାରର ଫୁଲ—ପଦ୍ମପରି ତଳୁ କାଦୁଅରୁ ଉଠେ ।

ତଳେ କାଦୁଅ ନ ଥାନ୍ତା ଯେମିତି ପଦ୍ମଫୁଲ ହୋଇ ନ ପାରେ ସେମିତି ତଳେ କାଦୁଅର ପରିମାଣ ଊଣା ହେଲେ ଭଜନ, କୀର୍ତ୍ତନ ଓ ଈଶ୍ୱର ଭକ୍ତି ହେବ କେମିତି ?

କାଦୁଅ ଥିଲେ ଗୋଡ଼ ଧୋଇବାକୁ ପଡ଼ିବ ପବିତ୍ର ହେବା ପାଇଁ । ତେଣୁ ଯେଉଁମାନେ ଅହରହ ପବିତ୍ର ହେଉଛନ୍ତି ସେଠି କାଦୁଅର ଅଟକଳ ନେଇ ହବ ।

ଏଣୁ କାଦୁଅକୁ ରିସକେଲ୍‌ ଭଲପାଏ । ସେଠି ଅଛି ସଢ଼ା ଜୀବନ ଓ ଆଇଁଷିଆ ଗନ୍ଧ ।

http://oaob.nitrkl.ac.in

ଚଣ୍ଡଶ୍ଚନ୍ଦ୍ରନତା ପର ପ୍ରିୟ ଶାସ୍ତ୍ର ମଣିଷର ନ ଥାଏ । ସେମିତି ପଶୁଙ୍କ କାହାଁଅ ପର ପ୍ରିୟ ପଦାର୍ଥ ଗ୍ରେସକେଲ୍ ନ ରଖିବ କାହିଁକ ? ସେ ସଦରରେ ଅଛୁ । ବଣ ଜଙ୍ଗଲ କଥା ବୁଝିବା ଦରକାର ନାହିଁ ।

ଗ୍ରେସକେଲ୍‌କୁ ଦୃଷ୍ଟିରେ ସମସ୍ତେ ରଖିଥାନ୍ତି । ତାଙ୍କୁ ଚଣ୍ଡବାନ୍ ନ କଲେ କାହାରିକୁ ଶାନ୍ତି ମିଳେ ନାହିଁ । ମୂର୍ଖଙ୍କୁ ପଣ୍ଡିତ କରିବା ପାଇଁ ଆମେ ଯେମିତି ଲକ୍ଷ ଲକ୍ଷ ଅନୁଷ୍ଠାନ ଖୋଲୁଛୁ ।

ହଠାତ୍ ଗ୍ରେସକେଲ୍ କାନ୍ଦି ଉଠିଲା । ସମସ୍ତେ ଧାଇଁଗଲେ ।

ଗ୍ରେସକେଲ୍‌ର ପାଟିରେ ଝୁଲୁଛି ଗୋଟାଏ କଙ୍କଡ଼ା ଗ୍ରେସକେଲ୍‌କୁ ଛାଡ଼ୁ ନାହିଁ ।

—ଆରେ ଦେଖ—ଦେଖ । ସିଏ ବସିଥିଲା କଙ୍କଡ଼ା ବଗ୍ରା ପାଖରେ । କଙ୍କଡ଼ାର ତଦାରଖ କରିବାକୁ ଯାଇଥିଲା । କଙ୍କଡ଼ା ଧରି ପକାଇଛି ।

ମଣିଷମାନେ ଲାଗିଗଲେ ଗ୍ରେସକେଲ୍‌କୁ ସାହାଯ୍ୟ କରିବାକୁ । ଗ୍ରେସକେଲ୍‌ର ପାଟିରୁ ରକ୍ତ ଝରିପଡ଼ିଲା । କଙ୍କଡ଼ା ମାଡ଼ ଖାଇ ମରିଗଲା ।

ଗ୍ରେସକେଲ୍‌କୁ ଯିଏ ଅପହରଣ କରିବ ସେ ଅବଶ୍ୟ ତାହାର ଶାସ୍ତି ପାଇବ । ମନ୍ତ୍ରୀଙ୍କର, ହାକିମଙ୍କର ଓ ଭିନ୍ନ ଭିନ୍ନ ବଡ଼ବଡ଼ଅଙ୍କର କୁକୁର ସାଙ୍ଗରେ ଯିଏ ଲାଗିବାକୁ ସାହସ କରିବ ସେ ଚୂନା ହୋଇଯିବ ।

ଏମିତି କୁକୁର ହେଉଛି ଅନେକ ଘରୋଇ ଯୁଦ୍ଧର କାରଣ । ସ୍ତ୍ରୀ ପାଇଁ ଯେତେ କଳଗୋଳ ଓ ହଟ୍ଟଗୋଳ ହୋଇଛି ତହିଁରୁ ଅଧିକ ହେଉଛି ଏଇ ଗ୍ରେସକେଲ୍ ପରି ଆଦ୍ରିତ କୁକୁରମାନଙ୍କ ପାଇଁ ।

ଏଇ ସୃଷ୍ଟି ଛନ୍ଦରା ହେଉଛି କୁକୁରଙ୍କର ମାଳାରେ । ନୀଳ ଅନ୍ଧାର ଆକାଶର ତାରା ପରି ସମାଜର କୁକୁରମାନଙ୍କର ସ୍ତର ଓ ଶ୍ରେଣୀ ସବୁ ଅଡ଼ୁଆର କାରଣ ।

କୁକୁରମାନଙ୍କୁ ଅପମାନ ହେଲେ ମନ୍ତ୍ରିମଣ୍ଡଳ ଟଳିଯାଏ । କଲେକ୍ଟରର କମିସନରଙ୍କର ଆସନ ହଲିଯାଏ । କନ୍ଦାର କୁକୁର ସରସ ଦେଖାଇବା ପାଇଁ ସମସ୍ତେ ଲାଗିଯାନ୍ତି ।

ଗ୍ରେସକେଲ ର ମାଲିକମାନଙ୍କର ବଦ୍ଧିତ ରାଗ ଲାଇଟ୍ ଉପରେ । ଲାଇଟ୍‌ର ଲୁମ ଏତେ ଲମ୍ବା କାହିଁକି ? ତାହାର ଚୂମ ଏତେ ଧଳା କାହିଁକି ? ସେ ଏତେ ଯତ୍ନରେ ରହୁଛି କାହିଁକି ? ତାହାର ଭୁକା ଏତେ ଗମ୍ଭୀର କାହିଁକି ?

ଏହାର ପରେ କରନ୍ତି ସ୍ଥାନୀୟ ଲୋକ । ସେମାନେ ହେଲେ ବସ୍ତିବାସୀ କମିଟି । ତାଙ୍କର ମତ ଅନୁସାରେ ଭାଗ୍ୟ ଉଠିଆସେ ଓ ପୁଣି ଲୋପ ପାଇଯାଏ ।

http://oaob.nitrkl.ac.in

ବହିଯାଉଥିବା ପାଣି ଉପରର ପାଣି ଫୋଟକା ପରି । ଉପରର ପବନ ଓ ତଳର ଆଘାତରେ ପାଣିଫୋଟକା ଗଢ଼ି ହୋଇଯାଏ । ପୁଣି ବଢ଼ିଉଠେ । ସେମିତି ଟୋପାଏ ପାଣି ଅବା ଜଳ ଭିତରେ ସାମାନ୍ୟ ଧକ୍କାଧକ୍କରେ ଭାଙ୍ଗି ଏକାକାର ହୋଇଯାଏ ।

ଏହାକୁ ଶାସ୍ତ୍ର କହନ୍ତି ଜୀବନ ।

ଗୋଟିଏ ଘଟ ଛାଡ଼ି ଜୀବନ ବାହାରିଯାଏ ଆଉ ଗୋଟିଏ ଘଟକୁ । ଗୋଟିଏ ପାଣି ଫୋଟକାରୁ ପବନ ବାହାରି ପୁଣି ଗଢ଼ିହୁଏ ଆଉ ଗୋଟିଏ ପାଣି ଫୋଟକା । ନୂଆ ପାଣି ଫୋଟକାରେ ଆକାଶର ଆଲୋକ ଇନ୍ଦ୍ରଧନୁ ଖେଳାଇଦିଏ ସେଇ ଫୋଟକା ଥିବା ପର୍ଯ୍ୟନ୍ତ ।

ମନ୍ତ୍ରୀ ଗାଦିରେ ଥିବାଯାଏ ତାଙ୍କର ମୁଣ୍ଡରେ ଅପରୂପ ଆଭା ଦେଖାଦିଏ । ତାଙ୍କର କଥାରେ ଫୁଲ ଫୁଟେ । ତାଙ୍କର କୁଟିଳ ଚାହାଣୀରେ କେତେ ଭାଗ୍ୟ ଲୋପ ପାଇଯାଏ । ପୁଣି ଦିନେ ମନ୍ତ୍ରୀ ଚାଲିଯାନ୍ତି ତାଙ୍କ ଆସନରୁ—ଆଉ ଥରେ ସେଇ ହୁଡ଼ ବାଡ଼ ଓ ଝାଡ଼ ପାଖକୁ ।

କୁକୁରଙ୍କର ପ୍ରଦର୍ଶନୀରେ ପ୍ରଥମ ଓ ଦ୍ୱିତୀୟ ହୋଇ ପୁରସ୍କାର ପାଇଲେ ମଧ୍ୟ କୁକୁରକୁ ତାହାର କୁକୁର ଲାଇନକୁ ଯିବାକୁ ପଡ଼ିବ ।

ମନ୍ତ୍ରୀଙ୍କର ମୁଣ୍ଡରୁ ପଗଡ଼ି ଖୋଲିଗଲେ ସେ ପୁଣି ଫେରିଯିବେ ସେଇ ଅପନ୍ତରାକୁ ତାଙ୍କର ଲାଇନ୍ ବାନ୍ଧିବାକୁ ।

ସ୍କୁଲ ପ୍ରାଙ୍ଗଣରେ ପିଲା ଯାଇ ସଭାପତିଙ୍କ ହାତରେ ହାତ ମିଶାଇ ଖୁସି ଫେରି ଆସିଲା ପରେ ସେ ତାହାର ମୂଳ ପାହାଚକୁ ଚାଲିଆସେ—ଚତୁର୍ଥରୁ ଏକାଦଶ ପର୍ଯ୍ୟନ୍ତ ଯେଉଁ ପାହାଚରେ ଥିଲା ସେଇ ପାହାଚକୁ ।

ସମସ୍ତେ ଫେରନ୍ତି ।

କୁକୁର ହୋଇ ଯାଇଥାନ୍ତି । ପୁଣି କୁକୁର ହୋଇ ଫେରନ୍ତି । ଯେତେ ପ୍ରଶଂସା ମିଳିଲେ ବି କୁକୁର ତାହାର ଗୁଣ ଓ ସ୍ୱଭାବକୁ ଛାଡ଼େ ନାହିଁ । ମଣିଷ ମଧ୍ୟ ତାହାର କୁକୁର ସ୍ୱଭାବକୁ ଛାଡ଼ିପାରେ ନାହିଁ ।

ମଣିଷ ଏଥିପାଇଁ ଆଗେ ବଣ ଜଙ୍ଗଲକୁ ଚାଲିଯାଉଥିଲା । ସେଠି ଗୋଟାଏ ନିରୋଳା ନିରାଞ୍ଜନ ଜାଗାରେ ରହିଯାଉଥିଲା । ତାହାର ଲକ୍ଷ୍ୟ ଯେ ସେ କୁକୁର ହେବ ନାହିଁ । ସେ କୁକୁର ପୋଷିବ ନାହିଁ ।

http://oaob.nitrkl.ac.in

ଯୋଡ଼ାଏ ମଣିଷ ଏକାଠି ହେଲେ ଜଣେ ଆର ଜଣଙ୍କର କୁକୁର ହେବାକୁ ବାଧ୍ୟ । କୁକୁର ହୋଇଗଲା ପରେ ସେ ରାସକେଲ୍ ପରି ତାହାର ମାଲିକଙ୍କୁ ଅକଡ଼ଥାଆର ଜଣବାକୁ ସମର୍ଥ ।

ଏଇ ସୂତ୍ରରେ ସ୍ତ୍ରୀ ତାହାର ସ୍ୱାମୀକୁ କୁକୁର କରିଛି । ପୁଅ ତାହାର ମାଆକୁ କୁକୁର କରିଛି । ଏଇ କୁକୁରମାନେ ମାଡ଼ ଖାଇଲେ ସହାନୁଭୂତିର ହାଟ ବସିଯାଏ ।

କୁକୁର ନ ଥିଲେ ସଂସାରରୁ ସ୍ନେହ, ଶ୍ରଦ୍ଧା, ସହାନୁଭୂତିର ବାରିଧାର ଶୁଖି-ଯାଇଥାନ୍ତା । କାଉ, ବିଲେଇ, ମଇନା, ନେଉଳ, ହରିଣ ଆଦି କେହି ମଣିଷକୁ ଏମିତି ଜାବ୍ଦା କରିପାରନ୍ତେ ନାହିଁ ।

ମଣିଷକୁ ଚେନ୍‌ରେ ବାନ୍ଧି ଏଇ ସଂସାରର ଖୁଣ୍ଟରେ କୁକୁର ଛଡ଼ା ଆଉ କେହି ପାରନ୍ତେ ନାହିଁ । କୁକୁରମାନେ ମଧ୍ୟ ରାସକେଲ୍ ପରି ନ ହୋଇଥିଲେ ଏଇସବୁ ବନ୍ଧାବନ୍ଧି ଓ ଛନ୍ଦାଛନ୍ଦି ସମ୍ଭବ ହୁଅନ୍ତା ନାହିଁ ।

ରାସକେଲ୍ ବାନ୍ଧି ରଖିଥିଲା ମନ୍ତ୍ରୀଙ୍କୁ । ଚରିତ୍ରହୀନାର ମିଠା ବ୍ୟବହାର ଦେଖାଇ ସେ ମନ୍ତ୍ରୀଙ୍କୁ ନଜର କରିଥିଲା । ରାସକେଲ୍ ମନ୍ତ୍ରୀଙ୍କର ଓ ମନ୍ତ୍ରୀ ରାସକେଲ୍‌ର ।

ଲୋକପ୍ରିୟ ନେତାପରି କୁକୁର ଛୁଆ ରାସକେଲ୍ ଆନନ୍ଦରେ ଥାଏ । ସେ ଅଣ୍ଡା ଖାଇବ କି ମାଂସ ଖାଇବ—ଏତିକି ମନ୍ତ୍ରୀଙ୍କର ଚିନ୍ତା ସ୍ରୋତରେ ଉଠପଡ଼ ହେଉଥାଏ ।

କୁକୁର ହୋଇ ନ ପାରିଲେ ପେଟକୁ ଅନ୍ନ ଯାଇପାରିବ ନାହିଁ । ଖାଲି କୁକୁର ହେଲେ ଚଳିବ ନାହିଁ । ଜଣେ ଲୋକର କୁକୁର ହେବାକୁ ପଡ଼ିବ । ଖାଲି କୁକୁରଟିଏ ହୋଇ ଲାଙ୍ଗୁଡ଼ ହଲାଉଥିଲେ ଅନ୍ୟ କୁକୁରମାନେ ମାରିଦେବେ ।

ଭଗବାନ୍ ଖୋଜନ୍ତି କୁକୁର । ମଣିଷ ଖୋଜେ କୁକୁର । କୁକୁର ଖୋଜେ ମୁନିବକୁ । ମଣିଷ ଖୋଜେ ଈଶ୍ୱରଙ୍କୁ ।

ଏଇ ଖୋଜା ଲୋଡ଼ାର ନାଁ ହେଲା ଠାକୁର ପୂଜା ।

ଆକାଶର ଗୃଧ ନୀଳ ସମୁଦ୍ର ଉପରେ ରାସ୍ତାଟିଏ ପରି ଲମ୍ବି ଯାଇଥାଏ । ସେଇ ରାସ୍ତାରେ ଘଣ୍ଟା ଘଣ୍ଟା ପହଁରିଲେ ଯେମିତି କୂଳ ମିଳିପାରେ ବା ନ ପାରେ ସେମିତି ପୂଜା କରି ଠାକୁରଙ୍କୁ ପାଇବା ହେଉଛି ଗୋଟିଏ ମାୟା ହରିଣକୁ ଧରିବା ପାଇଁ ।

ମାୟା ହରିଣ ଆଗକୁ ଆଗକୁ ବୁଲେ । ଆକାଶରେ ଗୃଧ ସେମିତି ବୁଲେ । ତଳେ ତାଙ୍କର ଛାଇର ରାସ୍ତା ସେମିତି ଲମ୍ବା ହୋଇ ଶୋଇଥାଏ ।

http://oaob.nitrkl.ac.in

ଏଇ ରାସ୍ତାରେ ଚାଲିବା ଯାହା ନ ଚାଲିବା ମଧ୍ଯ ସେଇଆ ।

ବରଂ କୁକୁରଟିଏ ହୋଇ ରାସକେଲ୍ ପରି ଜଣଙ୍କୁ ଅନୁସରି ଯାଇ, ଅଜ୍ଞ ହେଇ ଆଦର ସନ୍ତୁରେ ମୋହ ହୋଇ ଜୀବନ କଟାଇଦେବା ଭଲ ।

ବାରମ୍ବାର ସ୍ପର୍ଶ ଆଲିଙ୍ଗନ କରି ଯେମିତି ସ୍ତ୍ରୀ ତାହାର ମରଦକୁ ବା ପୁରୁଷ ତାହାର ନାରୀକୁ ଏକନ୍ତ୍ର କରିପାରେ ନାହିଁ । ସେମିତି କୁକୁରର ବଙ୍କା ଲାଞ୍ଜକୁ କେବେ ହେଲେ ସଳଖ ହେଇ ରଖାଯାଇପାରେ ନାହିଁ ।

ଏଇ ବିଫଳ ଚେଷ୍ଟାର ନାମ ହେଉଛି ସାଧନା । ରାସକେଲ୍‌କୁ ନିଜର କରିବାର ଚେଷ୍ଟା ହେଉଛି ସାଧନା ନିଜର ଆତ୍ମୀୟଙ୍କୁ ନିଜର ଏକାନ୍ତ କରିବାର ଅପଚେଷ୍ଟାର ନାମ ସାଧନା ।

ସାଧନା ଯେ କରୁଥାଏ ତାହାର ନାମ ସାଧକ ।

ସାଧକ ବର୍ଷ ଏମିତି ଆକାଶର ତାରଙ୍କୁ ଗଣୁଥାଏ ଅବା କୁକୁର ଲାଞ୍ଜକୁ ବର୍ଷ ସଳଖ କରୁଥାଏ ।

ଏଇଏ ଯଦି ସାଧନା ହେଲା ତେବେ ଆମେ ସମସ୍ତେ ସାଧକ କାରଣ ଅହରହ ଆମେ ନିଶ୍ୱାସ ନେଉଛୁ ପ୍ରଶ୍ୱାସ ଛାଡ଼ୁଛୁ । ଆମର ଆଖିପତା ପିଞ୍ଚୁ ପଡ଼ାଉଛି । ଛାତି ଭିତରକୁ ଧମନୀ ରକ୍ତ ଠେଲୁଛି । ପିଲା ବସିବସି ବ୍ୟାକରଣ ଘୋଷୁଛି ଅବା ମହାନଦୀର ଲମ୍ବା କେତେ ମନେରଖୁଛି ।

ଲକ୍ଷେ ହରିନାମ ଜପିବା ଯାହା ବଲ ଅଡ଼େଇ ଚଢ଼ିବା ସେଇଆ । ଡାକବାଲା ଚିଠି ବାଣ୍ଟିବା ଯାହା ଅଧ୍ୟାପକ କଲେଜରେ ପଢ଼ାଇବା ସେଇଆ । ସବୁକାମ ଆପଣା ଆପଣା ଭିତରେ ସମାନ ।

ଭାରତରୁ ସାହେବ ଚାଲିଗଲାପରେ ବିଲାତି କୁକୁର ଅନେକ କମିଗଲେ । କିନ୍ତୁ ଅନେକ ବିଲାତି ନାରୀ ଭାରତରେ ନୃତ୍ୟ, ଗୀତ ଓ ଦର୍ଶନ ପାଇଁ ଆସିଲେ । ଭାରତୀୟ ସତୀ ସମାଜ ନୂଆ ରୂପ ନେଇଗଲା ରଙ୍ଗିଣୀ ମେମ୍‌ମାନଙ୍କୁ ଧରି ।

ଆମେ ସମସ୍ତେ ଲାଗିଯାଇ ବିଲାତି କୁକୁରଙ୍କ ଜାଗାରେ ଆମର ରାସକେଲ୍‌ମାନଙ୍କୁ ବସାଇଦେଲୁ । ଏମାନେ ଖୁବ୍ ଭଲ ପୋଷା ମାନିଲେ । ବିଲାତି କୁକୁର ଥିଲା ଏକ ମୁନିବର କୁତା । ବଦଳରେ ଆମେ ପାଇଲୁ ବହୁତ ମୁନିବର କୁତା ।

ଜିଏ ଖାଉନ୍ଦ ହେବ ଆପେ ତାହାର । ଲେପ ପାଇଥିବା ରାଜନଅରର ନାତି ନମ୍ବର ଏଠି ଚଳିଲା । ରାସକେଲ୍ ବଂଶର ଅଭ୍ୟୁଦୟ ହେଲା ।

http://oaob.nitrkl.ac.in

ସେମାନେ କହିଲେ ଯେ ତାଙ୍କ କଥାରେ ସୂର୍ଯ୍ୟ ଉଦୟ ହୁଅନ୍ତି । ଇନ୍ଦ୍ର ଦେବତା ବର୍ଷା କରନ୍ତି । ହୀରାକୁଦ ବନ୍ଧ ଅମର ହୁଏ । କଟକର ନାଳନର୍ଦ୍ଦମା ଓଲନ୍ଦାଜଙ୍କର ଦେଶ ସଙ୍ଗରେ ସରସା ହୋଇଯାଏ । ସମସ୍ତେ ତାଙ୍କ ଉପରକୁ ଚାଲିଗଲୁ ।

ଘାସକେଲ୍ ଚାଲିଗଲାଣି ଆଲସେସିଅନ ଉପରକୁ । ଶାଶୁ ଉଠିଗଲାଣି ମାଥର ମୁଣ୍ଡ ଉପରକୁ । ଶାଳୀ ହେଲାଣି ଭଉଣୀର ହର୍ତ୍ତାକର୍ତ୍ତା । ଠାକୁର ପାଲଟି ଗଲେଣି ଟଣ୍ଟଟରୁଆଙ୍କର ନଜର ଏକାନ୍ତ ହୋଇ ।

—କହ ରେ ଘାସକେଲ୍ ! ଏଇ ସଂସାରରେ ଏତେ ହଟଚମକ୍ ହେଲ କେମିତି ? ଅପଦାର୍ଥମାନେ ପଦାର୍ଥ ହେଲେ କେମିତି ?

ପଦାର୍ଥମାନେ ଅପଦାର୍ଥ ହେଲେ କେମିତି ? ଘାସୁ କେଉଁମାନେ ଆମ ଠାକୁରଙ୍କୁ ଗିଳି ପକାଇଲେ କେମିତି ?

ଘାସକେଲ୍ ଗୁହିଁରହେ ମୁହିଁକୁ । ତାକୁ ଜଣାଯାଏ ଯେ ତାହାର ମାଲିକ ସାହିତ୍ୟ ବଦଳରେ ବୀଜଗଣିତ କହୁଛି । ସଂସାରଟା ହେଉଛି ସାହିତ୍ୟର ।

ସାହିତ୍ୟ ହେଉଛି ମଣିଷର ବଞ୍ଚିବାର ଓ ମରିବାର ଗୀତ । ସମାନଭାବରେ ସେ ଗୀତ ଗାଆନ୍ତି ଗଧ, କୁଆ ଓ ଘାସକେଲ୍ ।

ଘାସକେଲ୍ର ମନେପଡିଯାଏ ଏତେବେଳେ ହୋଇଗଲାଣି ତାକୁ ଛୁଟି ବେସକୁଟ କିଛି ମିଳି ନାହିଁ । ଓକିଲର ଅଫିସରେ କାମ ନ କରି କାମର ମୂଲ ଉଠାଇଲା ପରି ଏତେ ସମୟ ଗପ ସପ କରି ଘାସକେଲ୍କୁ କିଛି ନ ଦେବା ଭୂଲ୍ ।

ଅଗକୁ ପାହୁଣ୍ଡେ ଚାଲିଆସି ଘାସକେଲ୍ ଚାଟିଦିଏ ମାଲିକଙ୍କୁ । ସ୍ତ୍ରୀ ବି ଆସି ତାହାର ପ୍ରୀତିମିଶା ଚାହାଣୀରେ ଚାହିଁଥାଏ ଦୂର ଜଙ୍ଗଲକୁ ।

ନାଟର ପ୍ରତିଦ୍ୱନ୍ଦ୍ୱୀ କୁକୁର ଆ ଘାସକେଲ୍ । ଏଇ ପ୍ରକୃତ ଜାତଟା ମୂର୍ଖ ଓ ବେଇମାନ୍ ।

ବେଇମାନଙ୍କ ସାଙ୍ଗରେ ଚାଲିବା ଯାହା ଗୋଟାଏ ଅସାମାଜିକ ଲୋକସାଙ୍ଗରେ ଚାଲିବା ସେଇଆ । ଏଇ କ'ଣ କମ୍ ବଡ ସାଧନା ?

ଏହିପରି ବେଇମାନର କୁକୁର ହୋଇ ବଞ୍ଚିରହିବା କ'ଣ କମ୍ ସାଧନା ? କେତେ ଛଳ, ଛନ୍ଦ ଓ କପଟ କଲେ ବଞ୍ଚିହେବ ତାହାର ସାକ୍ଷାତ ରୂପ ହେଉଛି ଘାସକେଲ୍ ଓ ଘାସକେଲ୍ ମାଲିକଙ୍କ ଘର ।

ବଣରେ ବାଘ ହରିଣ ଏକାଠି ରହନ୍ତି । ଘର ନାହିଁ, କବାଟ ନାହିଁ, ଶିକୁଳି ନାହିଁ କି ପହରା ନାହିଁ । ତଥାପି ଏକାଠି ରହିବା ସମ୍ଭବ ।

http://oaob.nitrkl.ac.in

ସବୁ ହରିଣ ଏକାଠି ହେଲେ ବି ଗୋଟିଏ ବାଘକୁ ମାରିପାରିବେ ନାହିଁ । ଆଉ ବାଘ ଇଚ୍ଛା କଲେ ହରିଣପଲକୁ ଛିନ୍ନଛିନ୍ନ କରିଦେଇପାରିବ । ତେବେ ବି ବଣରେ ଏକାଠି ରହିବା ସମ୍ଭବ ।

ଏଇ ସଂସାରରେ ଅସଂଖ୍ୟ ପ୍ରକାରର ବ୍ଲାକମେଲ୍, ବେଇମାନ, କପଟୀ, ଠକଙ୍କ ଭିତରେ ବଞ୍ଚିରହିବା ସମ୍ଭବ । ସେଥି ଭିତରେ ପିଲାରୁ ବଡ ହେବା, ବଡରୁ ବୁଢା ହେବା ଓ ବୁଢା ହୋଇ ମାଟି କାମୁଡିବା ଓ ପୁଅ ନାତିଙ୍କର ମୁହଁ ଦେଖିବା ସମ୍ଭବ ।

ଅସମ୍ଭବକୁ ସମ୍ଭବ କରାଯାଇପାରେ । ଏଇ ଚେଷ୍ଟାର ନାମ ହେଉଛି ସାଧନା । ଏହା ସମ୍ଭବ କରିବା ହେଉଛି ସିଦ୍ଧି ।

ଏହାର ଉଦାହରଣ ଧ୍ରୁବତାରା ହେଉଛନ୍ତି ଈଶ୍ୱର ।

ସେଇ ଧ୍ରୁବତାରାର ଅନେକ ନାମ ଅଛି । ପ୍ରତ୍ୟେକ ନାମ ହେଉଛି ଠାକୁରଙ୍କର ନାମ । କିନ୍ତୁ ଏଇ ନାମକୁ ସଂସ୍କୃତ ବ୍ୟାକରଣର ଧାତୁରୂପ ପରି ମୁଖସ୍ଥ କରିବାର କାମ ଦେବତ୍ୱ ନୁହେଁ ।

ଇଏ ଯଦି ଦେବତ୍ୱ ହୋଇଥାନ୍ତା ତେବେ ସଂସ୍କୃତ ସ୍କୁଲର ପ୍ରତ୍ୟେକ ବିଦ୍ୟାର୍ଥୀ ଠାକୁର ହୋଇସାରିଥାନ୍ତେ ।

ହେବେ ନାହିଁ ବୋଲି ଠାକୁରମାନେ ଅପଣା ଅପଣା ଭିତରେ ଧ୍ରୁବ ବୋଲି ବୋଲି ହୁଅନ୍ତି । ଜଣେ ଆଉଜଣକୁ ପୂଜା କରେ । ରାଜ୍ୟର ମନ୍ତ୍ରୀ ଭାରତର ମନ୍ତ୍ରୀଙ୍କର ଧ୍ରୁବ ବୋଲନ୍ତି । ଭାରତର ମନ୍ତ୍ରୀ ଭାରତରେ ପାହାଡ ସମୁଦ୍ର ଆରପାଖେ ଠାକୁରଙ୍କୁ ଖୋଜନ୍ତି ।

ସେମାନେ ବ୍ଲାକମେଲ୍‌ର ଗୁଣକୁ ପସନ୍ଦ କରୁ ନ ଥିଲେ ହୁଏତ ନିଜର ବଡ-ବଡୁଆଙ୍କୁ ମନେପକାଉଥାନ୍ତେ । ନୀରବ ନିଶ୍ଚଳ ହୋଇ ବସିଯାନ୍ତେ ।

ଇଏ ଅସମ୍ଭବ କଥା । ସମୁଦ୍ର, ନଦୀ, ପବନ ଓ ପୃଥିବୀ ବନ୍ଦ ହୋଇଯିବ ନାହିଁ । ସମସ୍ତଙ୍କ ଦୋଷ ଭିତରୁ ଗୁଣ ସାଉଁଟିବାକୁ ପଡିବ । ବ୍ଲାକମେଲ୍ ପରି କୁକୁର ଛୁଆଙ୍କୁ ଦେଖି ନିଜର ଜୀବନକୁ ନିୟନ୍ତ୍ରଣ କରିବାକୁ ପଡିବ ।

ଏଥି ଭିତରେ ଚାଲେ ଜୀବନର ଧାରା ପ୍ରତ୍ୟେକ ଜୀବନ ବଞ୍ଚିବା ଯାଏ ତାହାର ଉପାଦାନର ସମଷ୍ଟି ।

ବ୍ଲାକମେଲ୍ ଯାହା ତାହାର ମାଲିକ ସେଇଆ । ମାଲିକର ଘର ଲୋକ ଓ ବାହାରର ଲୋକ ସେଇଆ ।

http://oaob.nitrkl.ac.in

ଏଗୁଡ଼ାକ ଯିଏ ମନେରଖେ ତାକୁ କୁହାଯାଏ ପାଗଳ । କିନ୍ତୁ ଯିଏ ଏହି ପାଗଳାମିକୁ ପାସୋରିଯାଏ ତାକୁ କୁହାଯାଏ ଭଲ ମଣିଷ । ସାହେବଙ୍କ ଆଖିରେ ସମସ୍ତେ ଭଲ ମଣିଷ । ଯିଏ ଖୁବ ବେଶି ଜୁହାର ଦେଇ ସେ ଅଚ୍ଛା ମଣିଷ । ଯେଉଁ ନେତାଙ୍କ ସରକାର ବା ମଣିଷ ଆମକୁ ମନ ଅନୁସାରେ ଭଲ ମନ୍ଦ, ନ୍ୟାୟ ଅନ୍ୟାୟ, ସତ ଅସତ ପରଖି ଦିଏ ସେ ହେଉଛି ଆମର ଭାଗ୍ୟ ଲେଖା ।

ଗଛ ହୋଇ ଫଳ ନ ଦେବ, ମଣିଷ ହୋଇ ଆଦର ସୋହାଗ ଓ ଖୋସାମଦ ନ ଦେବ, ସେଇଟା ମଣିଷ ନୁହେଁ ପଶୁ—ପଶୁ ନୁହେଁ ସେ ସାହେବଙ୍କ ଘର କୁକୁର ।

ଏହିପରି କୁକୁରଙ୍କର ଜୀବନ ସାଙ୍ଗରେ ଯାଏ ନିଜର ଜୀବନକୁ ମିଶାଇ ପ୍ରତ୍ୟେକ ଦିନର ଭାଗ ଉଜାଡ଼ି କରିଦିଏ ସେ ହୁଏ କର୍ମଚାରୀ । ଏଇ କର୍ମଚାରୀମାନେ ସମସ୍ତଙ୍କୁ ଅଲସୁଆ କହନ୍ତି । ଏଇ ଅଲସୁଆଙ୍କୁ ସାର୍ଟିଫିକେଟ୍ ଦିଅନ୍ତି ବଡ଼ମାନେ ।

ଯେ ଯେତେ ଫୁଲି ପାରୁଛି ସେ ସେତେ ବଡ଼ । ତାହାର ମତାମତ ସେତିକି ଦାମୁଆ ।

କୁକୁର ଭୁକିବାର ମୁନିଅ ଦାନ୍ତର ଦାଢ଼ରୁ ତାହାର ବୁଦ୍ଧିବିଦ୍ୟା ମାପିହୁଏ । ସାନ ପିଲାର ହରରଙ୍ଗୀ କଥାରୁ ତାହାର ବୁଦ୍ଧିର ଅଟକଳ ନେଇହୁଏ । ସେମିତି ଯୁବତୀର ସ୍ୱରରୁ ମନହୃଣା ତରଙ୍ଗରୁ ତାକୁ ଠଉରାଇ ହୁଏ ।

ପଣ୍ଡିତ ମହାଶୟଙ୍କର ଗର୍ଜନ, ଠକର ଉନ୍ମାଦନାକାଙ୍କ୍ଷୀ କଥା କହିବାର ଭଙ୍ଗୀ, ଛଇଳର ଚାଲିବାର କୌଶଳ ଓ ବଦମାସର ଆଖି ପରି କୁକୁର ଭୁକିବା ତାହାର ଗୁଣର ବିଭବ ଦେଖାଇପାରେ ।

ଗୁଣ ନ ଥିଲେ ପ୍ରାଣୀର ଜୀବନ ଅକାରଣ । ସେଥିପାଇଁ ଯେତେବେଳେ ମଣିଷ ତାହାର ଗୁଣରେ ଆକାର ବଢ଼ାଇ ପାରେ ନାହିଁ ସେତେବେଳେ ସେ ତାହାର ଦୋଷକୁ ବଢ଼େଇ କୁହେଇ ଗୋଟିଏ ଗୁଣ କରିଦିଆ କରିଦିଏ ।

ଗୁଣ ଓ ଦୋଷ ଏକ ଜିନିଷ । ଗୁଣ ବିଗିଡ଼ିଗଲେ ଦୋଷ ହୋଇଯାଏ । ଦୋଷ ସେମିତି ଦେହ ପରି ବର୍ଷ ଥଳଥଳ ହୋଇଗଲେ ଗୁଣ ହୋଇଯାଏ ।

ମଦ ଖାଇବା, ଅଫିମ ଖାଇବା, ଗଞ୍ଜେଇ ଖାଇବା ଓ ଗୃହଆଡ଼େ ଗାଳି ଦେ କଳିଗାଳି ଖୋଜି ବୁଲିବା ଦୋଷ ଯେମିତି ଗୁଣ ବି ସେମିତି ।

କୁକୁର ଭୁକା ଯେମିତି ଗୋଟିଏ ଗୁଣ—ସେମିତି ଗୋଟିଏ ଦୋଷ । କୁକୁରର କାମୁଡ଼ା ଯେମିତି ଗୋଟିଏ ଗୁଣ ସେମିତି ଗୋଟାଏ ଦୋଷ ।

ଆବକାରୀର ଦୁଃଖିଆ ନ ଥିଲେ ଅନେକ ପରିବାର ଉଜୁଡ଼ି ପଡ଼ନ୍ତା । ତାଙ୍କର ସ୍ତ୍ରୀ ବାଳକ ଖାଇବାକୁ ପାଆନ୍ତେ ନାହିଁ । ମଦ, ଗଞ୍ଜେଇ, ଅଫିମକୁ ସମସ୍ତେ ମାରମାର

http://oaob.nitrkl.ac.in

କଲେ ସରକାର ବି ଦେବାଳିଆ ପାଲଟିଯାଆନ୍ତା । ପଢ଼ାପିଲା ଆଉ ଭୂଗୋଳରେ ପ୍ରଥମ ହେଇ ବୃତ୍ତି ପୁରସ୍କାର ପାଆନ୍ତେ କେଉଁଠୁ ?

ପଶୁ ଜାତି ଶିଖାଇ ଦିଏ ସମସ୍ତଙ୍କୁ ଯେ ଭଗବାନଙ୍କର ବିଚିତ୍ର ସୃଷ୍ଟିରେ ଦୋଷ ଓ ଗୁଣ ହେଉଛି ଆମର ବିଚାରର ବିଭ୍ରାଟ ।

ଗାଈ ଦୁଧ ଦିଏ ସତ । କିନ୍ତୁ ଗାଈ ମରିଗଲେ ଯଦି ଶାଗୁଣା ନ ମିଳନ୍ତେ ତାହାହେଲେ ମଣିଷ ସେଇ ପଚିସଢ଼ା ଦୁର୍ଗନ୍ଧରେ ରୋଗରେ ପଡ଼ି ଡାକ୍ତରଖାନାକୁ ଗଲନ୍ତା ।

ଆମର ବଞ୍ଚିବା ପାଇଁ ବାଘ, ସିଂହ, ଗଧ, ଝଟର, ଛେଳି, ମେଣ୍ଢା ଦରକାର । ସେମିତି ଦରକାର ମଇନା, ତୋତା, ମାଛି, ମହୁମାଛି, ବିଲୁଆ ହେନ୍ତା ଆଦି ସମସ୍ତେ । ଲେଖକ ଦରକାର । ପାଠକ ଦରକାର । ଛାପାଖାନା ଓ ବହିଦୋକାନ ଦରକାର ।

ସମସ୍ତେ ଦରକାର ଆମ ରାସକେଲ୍ ପଶୁ । କିଏ ଆମ ଛାତରୁ ଫାଳେ ଟାଣି ନେଇଯାଏ, ଆଉ କିଏ ଆମର ହୃଦୟକୁ ଭରିଦିଏ ତାହାର ଅଶେଷ ଖେଳ କୌତୁକରେ ।

ବିଚରା ରାସକେଲ୍ଟା ଖାଲି ବେମାର ପଡ଼ୁଛି । ପ୍ରତି ହପ୍ତାରେ ସେ ଦିନେ ଓଳିଏ ଉପାସ ପଡ଼ୁଛି । ବୋକାଟାଏ—ତାହାର ପେଟକୁ କ’ଣ ଭଲ ବୁଝିପାରୁ ନାହିଁ ।

କିଏ ଅବା ଏଇ ସଂସାରରେ ଶୋଧନ ହେଇପାରିଲା ? କାହାର ଚରିତ୍ର ଦୋଷ ଲୋପ ପାଇଲା ? କିଏ ଅବା ମଣିଷ ହେବାକୁ ଚେଷ୍ଟା କଲା ? ସମସ୍ତେ କହୁଛନ୍ତି ତାଙ୍କୁ ସ୍ୱୀକାର କରିନେବାକୁ । କିନ୍ତୁ କେହି ବଦଳିବାକୁ ରାଜିହେଉ ନାହାନ୍ତି ।

ବଦଳିବା ଦରକାର କ’ଣ ? ସମସ୍ତେ ଖୋଜୁଛନ୍ତି ଦରକାରୀ ପଦାର୍ଥକୁ ଓ ଦରକାରୀ ମଣିଷଙ୍କୁ । ସାପ ଧରିବାକୁ କେଳା ଦରକାର । ରୋଗକୁ ହଟାଇବାକୁ ଗରଳ ଦରକାର । ପେଟ ପୋଷିବାକୁ ଗୋଖର ସାପ ଦରକାର ।

ଭୋଟ ଜିଣିବାକୁ ଗୁଣ୍ଡା ଓ ପହିଲିମାନ ଦରକାର—ଦାର୍ଶନିକ ବା ପ୍ରେମିକ ପ୍ରେମିକା ନୁହନ୍ତି । ମନ୍ତ୍ରୀଙ୍କୁ ଧରିବାକୁ ଉଚିତ କିସମର ମହିଳା ଦରକାର—ସେ ସହଧର୍ମିଣୀ ହୋଇପାରନ୍ତି ବା ନ ହୋଇପାରନ୍ତି । କାମ କରାଇବାକୁ ଯେଉଁଠି ଲାଞ୍ଚ ଓ ରସପତ୍ର ଦରକାର ସେଠି ଯାଇ ଭାଗବତ ପରାୟଣ କଲେ ଲାଭ ହୋଇପାରେ କି ?

ରାସକେଲ୍ କି କାମ କରିବ ଯେ ଆମର ଏତେ ଦରକାର ? କୁକୁର ଛୁଆ ଓ ମଣିଷ ଛୁଆ ବାଲରିଷ୍ଟରେ ମରନ୍ତି । ଖାଲି ମରେ ନାହିଁ ଗଛ । ରାସକେଲ୍କୁ ବଞ୍ଚେଇ ରଖିଲେ କ’ଣ ହେବ ?

http://oaob.nitrkl.ac.in

ସବୁ ହେବ ? ମାସକୁ ପାଞ୍ଚଟଙ୍କା କରି ବ୍ୟାଙ୍କ୍‌ରେ ଜମା ରଖିଲେ କ'ଣ ହେବ ? ଦିନକୁ ଗୋଟାଏ ଭିଟାମିନ୍ ବଡ଼ି ଖାଇଲେ କ'ଣ ହେବ ? ପ୍ରତିଦିନ ଘରଣୀ ପାଖରେ ଜାକଜୁକ ହେଲେ କ'ଣ ହେବ ?

କିଛି ହବ ନାହିଁ । କିଛି ହୁଏ ନାହିଁ । କାହାର କେବେ କିଛି ହୋଇ ନ ଥିଲା । ଅଧା ସୁନା ପାଲଟିଯାଇ ନେଉଳ ଅସଂଖ୍ୟ ହୋମ ଓ ଯଜ୍ଞବେଦୀ ପାଖରେ ଗଡ଼ିଥିଲା । ଆଉ ଅଧିକ ସୁନା କରିବାକୁ ।

ଅସଂଖ୍ୟ ଲୋକ ପୂଜା କରୁଛନ୍ତି ଲକ୍ଷ୍ମୀଦେବୀଙ୍କୁ ଧନ ପାଇଁ । ଧନ ମିଳୁଛି ନିଜର ଶକ୍ତି ଓ କଳ୍ପନା ଅନୁସାରେ । ବେଙ୍ଗକୁ ହାତୀର ଆହାର ମିଳ ନାହିଁ, ଅବା ହାତୀକୁ ମଶାର କ୍ଷମତା ଦିଆ ହୋଇପାରି ନାହିଁ ।

ଈଶ୍ୱରଙ୍କର ଶକ୍ତି କାହିଁ ଯେ ସେ ଆମର କ୍ଷମତାର ଓ ଅଧିକାରର ପରିସର ବଦଳାଇଦେବେ ? ତାଙ୍କୁ ପୂଜା ନ କଲେ ସେ ଅପୂଜା ରହିବେ । ପବିତ୍ର ପଦାର୍ଥ ପୂଜା ନ ଦେଲେ ସେ ଅବା କ'ଣ କରିପାରିବେ ?

ମଣିଷ ଯେମିତି ଅସହାୟ ଠାକୁର ବି ସେମିତି ଅସହାୟ । ତାଙ୍କର ବି ମନର ପ୍ରତିମା ଅଛି । ତାଙ୍କର ବି ଘରୋଇ କଳି, ମାନ ଅଭିମାନ ଅଛି । ତାଙ୍କର ବି ବାହନ ଓ ଆଶ୍ରିତ ଅଛନ୍ତି । ତାଙ୍କର ବି ଅନେକ ଗ୍ରୁପକେଲ୍ ।

ଗ୍ରୁପକେଲ୍‌ର କୁଳ ମୁହଁ ଓ ଗ୍ରେଟ ଗ୍ରେଟ ଗୋଡ଼କୁ ଗୁହିଁଲେ ନିଜର ପୁରୁଣା ଦିନ ମନେପଡ଼େ ଓ ମନେପଡ଼େ ଈଶ୍ୱର କେମିତି ଥରକୁ ଥର ଘରୋଇ ଟିଉସନ ମାଷ୍ଟର ପରି ପିଲା ଫେଲ ମାରିବାରୁ ଅପଦସ୍ଥ ହେଉଛନ୍ତି ।

ଏଇ ଗ୍ରୁପକେଲ୍ ବେଶି ବଡ଼ ହେବ ନାହିଁ । ଇଏ ବଡ଼ ପଦପଦବୀ ପାଇବ ନାହିଁ । ଖୁବ୍ ବେଶି ସୌଭାଗ୍ୟ ହେଲେ ସେ ଘସାଆଉଁସା ପାଇବ ସେଇ ଘରକୁ ଆସୁଥିବା ବଡ଼ ମଣିଷଙ୍କଠାରୁ ।

ସିଏ ଭିତରକୁ ଆସିଲାବେଳେ ନିଜକୁ କହୁଥିବ ଯେ ଠାକୁରେ ବି ଅସରଣରେ ଗଧପାଦ ଧରନ୍ତି । ଦେହରେ ଉତ୍ତେଜନା ଅଧିକ ହେଲେ ନାରୀର ଜାନୁସେବା କରିବା ଦରକାର ହୁଏ । ପ୍ରତିଦ୍ୱନ୍ଦ୍ୱିତାରେ ଜିତାପଟ ପାଇବାକୁ ହୁଏତ ନିଜର ଦେହକୁ ଭେଟି ଦବା ଦରକାର ହୁଏ ।

ଭାରତର ହକି ଖେଳର କାପଟେନ୍ ଲେଖି ଜଣାଇଥିଲେ ଯେ ଭାରତୀୟ ଦଳର ଅଧିନାୟକତ୍ୱ କରିବା ପାଇଁ ତାଙ୍କୁ ହକି କୋଚଙ୍କର ବିଛଣାରେ ଶୋଇ ତାକୁ ସନ୍ତୁଷ୍ଟ କରିବାକୁ ପଡ଼ିଥିଲା ।

http://oaob.nitrkl.ac.in

ଯିଏ ଯେଉଁଥିରେ ସନ୍ତୋଷ ପାଇବ ତାକୁ ସେଇ ପରିମାଣରେ ତ୍ୟାଗ କରିବାକୁ ପଡ଼ିବ । ଉପାସ ରହି ଧ୍ୟାନକରିବା ଯେପରି ଦରକାର ପଡେ, ସେହିପରି ନିଜର ସ୍ୱଭାବ ବିରୁଦ୍ଧରେ କାମ କରିବା ଦରକାର ହୁଏ ।

ଅତି ସାମାନ୍ୟ ସ୍ତରର ସ୍ତ୍ରୀ ମୁହଁରେ ଓ ତାହାର ଜଠରରୁ ବାହାରିଥିବା ପିଲାଙ୍କ ମୁହଁରେ ହସ ଫୁଟେଇବା ପାଇଁ କିଏ ତହବିଲ ଲୁଟି କରୁଛି ଓ କିଏ ନିଜର ସବୁକିଛି ବଦଳରେ ମାଗୁଛି ପିଲାମାନଙ୍କ ମଙ୍ଗଳ ।

ନିଲୁଛୁଆ ଘରର ପିଲା ଦପ୍ତରଖାନା ଚାକିରି ପାଇଲା ପରେ ଚାକିରିର ସ୍ଥାୟିତ୍ୱ ଓ ଦୃଢ଼ତା ପାଇଁ ନଣାପାଣି କରୁଛନ୍ତି ଓ ନିଜର ସଂସାରକୁ ଉଜାଡ଼ି ଦେଉଛନ୍ତି ।

ରାସକେଲ୍‌ର ମନ ନେବା ପାଇଁ ସେମିତି ତ୍ୟାଗ ଓ ସ୍ୱାର୍ଥତ୍ୟାଗ କରିବାକୁ ପଡ଼ୁଛି । ଲକ୍ଷ୍ମୀବାରରେ କଂସେଇଠାରୁ ମାଂସ କଣ୍ଢା ଆଣି ରାସକେଲ୍‌କୁ ଦିଆ ହୁଏ । ରାସକେଲ୍‌ର ବଳ ବଢିବା ଦରକାର । ହୃଦସ୍ଥ ହାରଣୀର କବିରାଜ ମୋଦକ ଦରକାର ।

ଅଡ଼ୁଆ ରହେ ମାଲିକର ଉନ୍ନତି କାହିଁକି ରାସକେଲ୍ କରାଉ ନାହିଁ ?

ଠାକୁର ପରା ସବୁ ପ୍ରାଣୀଙ୍କ ଦେହରେ ଅଛନ୍ତି । ତେବେ ରାସକେଲକୁ ଘସା ଆଉଁସା ଓ ଗେଲ କଲେ ଭଗବାନ କାହିଁକି ନ ପାଇବେ ?

ଠାକୁର କ'ଣ ପିମ୍ପୁଡ଼ି, ମାଛି, ମଶା, ଗୁଡ଼ପୋକ ପରି ଜୀବନଠାରେ ନ ରହି ଖାଲି, ହାତୀ, ଘୋଡ଼ା, କୁକୁର ଭିତରେ ରହନ୍ତି ? ଠାକୁର କ'ଣ ଖାଲି ରାଜା, ମନ୍ତ୍ରୀ, ଏମ୍. ଏଲ. ଏ. ଓ ସେକ୍ରେଟେରୀଙ୍କ ଦେହରେ ବିରାଜମାନ କରନ୍ତି ? ନା ସେ ଭଏାଡ ମେମ୍ବର, ସରପଞ୍ଚ ଓ ଚେଅରମ୍ୟାନ ଭିତରେ ବି ଥାଇପାରନ୍ତି ? ଡିରେକ୍ଟର ଭାବୁଛନ୍ତି ଯେ ଠାକୁର ତାଙ୍କର ଘର ଭିତରେ ବନ୍ଦୀ । ପ୍ରାଇମେରୀ ଶିକ୍ଷକ କାନ୍ଦି କାନ୍ଦି ସେଠି ଠାକୁରଙ୍କୁ ଡାକୁଛି ।

ପ୍ରକୃତ କଥା ଯେ ସମୁଦ୍ରରେ ଜାହାଜ ଚାଲେ । ପୁଣି ଜାହାଜ ଚାଲେ ଗଙ୍ଗା ଗୋଦାବରୀର ଅଥଳ ପାଣିରେ । ସେ ଯାଇ ଗାଡ଼ିଆ ପୋଖରୀରେ ଚାଲେ ନାହିଁ । କାରଣ ଠାକୁର ପରା ସର୍ବଶକ୍ତିମାନ୍ ଓ ସର୍ବବ୍ୟାପୀ ଅନନ୍ତ କ'ଣ ଏଠି ସେଠି ଓ ସବୁଠି ରହିପାରିବେ ?

ନା—ରହିପାରିବେ ନାହିଁ । ତାଙ୍କର ବି ଭଲ ଖାନା ଓ ପିନ୍ଧନା ଦରକାର । ସେ ବାଘ ହୋଇ ହରିଣକୁ ଖାଇବେ ଓ ହରିଣ ଘରଣୀକୁ ଛେଉଣ୍ଡ କରି ଛାଡ଼ିଦେବେ ।

http://oaob.nitrkl.ac.in

ପ୍ରବଳର ଦୁର୍ବଳ ଉପରେ ଯେଉଁ ଅତ୍ୟାଚାର ହୁଏ ତାକୁ ଠାକୁର କରନ୍ତି । ସେଇଟା ତାଙ୍କର ଇଚ୍ଛା ଓ କର୍ତ୍ତବ୍ୟ । ଦୁର୍ବଳ ଉପରେ, ନିଜର ବଳ ଦେଖାଇ ନ ପାରିଲେ ପ୍ରବଳର ଆକାର ପ୍ରକାର ବଦଳିଯିବ । ଈଶ୍ୱର ଲୋପ ପାଇଯିବେ ।

ସଂସାରରେ ଯଦି କାତର ବିଳାପ ନ ଥାନ୍ତା ତାହାହେଲେ ଏଇ ସଂସାର ହୋଇଥାନ୍ତା ଈଶ୍ୱର—ବିହୀନ ମରୁଭୂମି । ସେଇ ସଂସାରରେ ଯଦି ରକ୍ଷକମାନେ ଭକ୍ଷକ ନ ହୋଇଥାନ୍ତେ ତାହାହେଲେ ଏ ସଂସାରରୁ ଅସାମାଜିକ ଶବ୍ଦ ଉଠି ଯାଇଥାନ୍ତା । ଅଭିଧାନରେ ସେଇ ସ୍ଥାନ ପୂରଣ ହୋଇପାରନ୍ତା ନାହିଁ ।

ଏଇ ଅସାମାଜିକ ଲୋକଙ୍କୁ ଧରିବାପାଇଁ ଅନେକ ସଂସ୍ଥା ରଖାହୋଇଛି । ଗୋଟିଏ ହେଲା ମନ୍ଦିର, ଆଉଟି ନ୍ୟାୟାଳୟ, ଆଉ ଗୋଟିଏ ହେଲା ଥାନା ଓ ବସାଘର ଓ ଶେଷକୁ ରହିଲା ଡାକ୍ତରଖାନା, ଓକିଲଖାନା ଓ ଫାଶି ।

ଈଶ୍ୱରଙ୍କର ଇଚ୍ଛାରେ ଏଇସବୁ ଅନୁଷ୍ଠାନକୁ ବିଶେଷ ବଳବଦ୍ଧ ଦଆଇ ଚଳାଇ ରଖାହୋଇଛି । ପରିଷ୍କାର କରିବାର ଶକ୍ତି ଈଶ୍ୱରଙ୍କର—ସରକାର ତାହାର କର୍ମଚାରୀଙ୍କୁ ବାଧ୍ୟତାମୂଳକ ଅବସର ଦେବା ପରି ।

ଭିକାରି, କୁକୁର ଓ ଭେକଲ୍ ଲୋକ ରଖା ହୋଇଛନ୍ତି ମଣିଷ ତାହାର ଦୟାର ମାହାତ୍ମ୍ୟ ଦେଖାଇବ ବୋଲି—ଆଖଡ଼ା ଫଳକାରେ କୁସ୍ତି କସରତ୍ ଦେଖାଇବା ପରି ।

ସବୁ କ'ଣ ନିରର୍ଥକ ? କେଉଁଗୁଡ଼ିକ ସାର୍ଥକ ? ଦାନ୍ତ ଘଷିବା, ମୁଣ୍ଡରେ ତେଲ ଲଗାଇବା, ପାଦରେ ଅଳତା ଲଗାଇବା, ଦାଢ଼ି ଗୁମ୍ଫିବା, ଚିଠି ଲେଖିବା କ'ଣ ସାର୍ଥକ ନା ନିରର୍ଥକ କାମ ? ସାଇକେଲର୍ ସେବା କ'ଣ ନିରର୍ଥକ ?

ଗୁରୁ ହୋଇ ସାଇକେଲ୍ ବସିଥାଏ ତାହାର ଜାଗାରେ । ତାହାର ମନକୁ କିଏ କେମିତି ଓ କେତେ ବୁଝିବ ଅଟକଳ ନେବାପାଇଁ ।

ମଣିଷର ପ୍ରଧାନ କାମ ହେଲା ଅପରର ମନକୁ ଠଉରେଇବା—କର୍ଣ୍ଣପିଶାଚ ବଳରେ ହେଉ ବା ଅନ୍ଦାଜରେ ହେଉ ।

କାହାରି ମନ କଥା କେହି ବୁଝିପାରେ ନାହିଁ । ପବନ କେତେବେଳେ କୁଆଡ଼େ ବୋହିବ ଜାଣିବା ଯେମିତି ଦୁରୂହ ସେମିତି ଆଉ ଜଣକ କ'ଣ ପାଞ୍ଚୁଛି ଜାଣିବା ସେମିତି ଅସମ୍ଭବ ।

ହଠାତ୍ ଦିନେ ପାଞ୍ଚ ପିଲାଙ୍କୁ ଛାଡ଼ି ମାଆ ଚାଲିଯାଏ ମଠକୁ ବା ମିସ୍ତ୍ରୀ ଘରକୁ । ସେଠି ତାକୁ ଖାଲି ଶୁଭେ ନିଜର ଭିତରର ଗର୍ଜନ—ମାତୃହୃଦର କ୍ଷୀଣ ଝଙ୍କାର, ସ୍ତ୍ରୀ-ପଣିଆର କାକଳୀ ଲୋପ ପାଇଯାଏ ।

http://oaob.nitrkl.ac.in

ସେ ଗୁଲେ ମିସଲ ଆଡ଼େ—ଶୁଣ ଧର୍ମାବତାର ! ଏକ ଜନ୍ମ ଓ ଜୀବନ ବ୍ୟର୍ଥ ହେବା ଉପରେ । ଆମର ଯୋଡ଼କୁ ଖୋଲିଦିଅ ଆଇନର କତୃତ୍ୱରେ ।

—ଏଁ—ଏକାଠି ରହିପାରିବ ନାହିଁ ?

—ନା, ଆପଣ କ'ଣ ରହିପାରିବେ ଏଇ ଲୋକ ସାଙ୍ଗରେ ? ସେ ମଣିଷ ନୁହେଁ । ସେ ହେଉଛି ପଶୁ ।

—ପଶୁ ?

—ହଁ । ଯିଏ ଅପରର ମନକୁ ବୁଝେ ନାହିଁ ସେ କ'ଣ ମଣିଷ ହୋଇପାରେ ?

—ଏତେଦିନ ତେବେ ରହିଲ କେମିତି ?—

—ଏଇ କେଲାର ସାପ ପରି । ମଣିଷ ସାପ ସାଙ୍ଗରେ ଘର କରିପାରେ । ସିଂହ ବାଘଙ୍କୁ ପାଖରେ ରଖି ରହିପାରେ । ଖାଲି ମଣିଷକୁ ରଖିହୁଏ ନାହିଁ । ସେ ହେଉଛି ମାରାତ୍ମକ କର୍କଟ ରୋଗର ଭୂତାଣୁ— ।

—କୁକୁର କି ବିଲେଇଟିଏ ପୋଷି ପାରିବ ?

—ନିଶ୍ଚୟ । କାରଣ ପଶୁର ହୃଦୟ ଅଛି । ସେ ପାଦ ଗୁଣ୍ଡିପାରେ । ପାଦ ପାଖରେ ଶୋଇପାରେ । ଗ୍ରୀବାରେ ଓ ପେଟରେ ନାକ ଗୁଞ୍ଜି ସୌହାର୍ଦ୍ଦ୍ୟର ଚରିତ୍ର ଦେଖାଇପାରେ । ଦରକାର ପଡ଼ିଲେ ତାହାର ମୁନିଆ ଦାନ୍ତକୁ ବସାଇ ଦେଇ-ପାରେ । ଯେତେ ଯାହା କଲେ ବି ମଣିଷଠାରୁ ଢେର ଭଲ ।

ଦଶ ବର୍ଷ ଘର କରି ବିଦେଶ କରି ଅସଂଖ୍ୟ ସୁଖ ଦୁଃଖ କାହାଣୀର ମହାଭାରତ ଶୁଣାଇ ଦିନେ ସ୍ୱାମୀ ସ୍ତ୍ରୀକୁ ଅବା ସ୍ତ୍ରୀ ତାହାର ସ୍ୱାମୀକୁ ଛାଡ଼ିଦେଇ ଚାଲିଯାଏ ଆଉ ଜଣଙ୍କ ସାଙ୍ଗରେ । ଏଠି ଯାହା ଅଛି, ସେଠି ସେଇଆ ଅଛି । ହେଲେ କ'ଣ ହେଲା ଛଡ଼ାଛଡ଼ି ହେବା ଦରକାର । ଅତୀତର ପ୍ରୀତିକୁ ଘୃଣା କରିବା ଦରକାର କୋର୍ଟ କଚେରିକୁ ଯିବା ଦରକାର ।

ଦଲବଦଲ ନ କଲେ ଜୀବନ ଅସମ୍ପୂର୍ଣ୍ଣ । ମିଛ କହି, ଠକମକ କରି ଓକିଲ ଜରିଆରେ ହାକିମଙ୍କୁ ଝଲକା କରି ପାଞ୍ଚ ଥରଥର ଦେବାଳିଆ ନ ମାରିଲେ କେହି କ'ଣ ବେପାରରେ ଶେଠ ହୋଇପାରିବ ?

ସେମିତି ପାଞ୍ଚ ପଚିଶି ସ୍ତ୍ରୀର ମନ ନେଇ ତାଙ୍କୁ ଛାଡ଼ି ଅନ୍ୟଆଡ଼େ ମନ ବଳାଇଲେ ତାକୁ ପ୍ରେମିକ କୁହାଯାଏ । ଅନ୍ୟର ମନକୁ ନେଇ ତାକୁ ଫତୁରା କରି ନ ପାରିଲେ କେହି ପ୍ରେମିକ ହୁଏ ନାହିଁ ।

http://oaob.nitrkl.ac.in

ଦଶ ପାଞ୍ଚଜଣଙ୍କର ବିଛଣାରେ ନ ଶୋଇଲେ ପ୍ରେମିକର ଖ୍ୟାତି ମିଳିପାରେ ନାହିଁ । ଗୋଟିଏ କୁକୁରକୁ ରଖି କେହି କେବେ କୁକୁରିଆ ହୋଇପାରେ ନାହିଁ । ଅଜଣା ଅଚିହ୍ନା କୁକୁର ଯାହାକୁ ଦେଖି ଆଦରିଯାଏ ସେଇ କୁକୁର ପ୍ରେମିକ ।

ଗ୍ରେସକେଲ୍‌କୁ କ'ଣ କିଛି ଦିନ ପାଇଁ ଲାଇଟ ସାଙ୍ଗରେ ବଦଳାଇ ହେବ ? ଗ୍ରେସକେଲ୍ ରହିବ ଲାଇଟ ମାଲିକ ପାଖରେ । ଲାଇଟ ଆସିବ ଗ୍ରେସକେଲ୍ ଘରକୁ । ତାହାହେଲେ ଏଇ ବଦଳାବଦଳି ଖୁବ ମଜ୍ଜାଦାର ହେବ ।

ମାଲିକମାନଙ୍କର ରାଜି ଅଣାଗଲେ ବି କୁକୁର ଦୁଇଟି ଆପତ୍ତି କଲେ । ଏକ ଆରେକକୁ ଦେଖିଲେ— ମାରେ କି ମରେ—ହେଲେ ।

ଦୁହେଁ ସଚ୍ଚୋଟ ସତ । ସେମାନେ ବଦଳାବଦଳି ହେବେ ନାହିଁ । ହୋଟେଲରେ ମଜା ଦେବାକୁ ଓ ନେବାକୁ କମସ୍ତ ଦେବେ ନାହିଁ । ପରସ୍ପର ଭିତରେ ବଦଳାବଦଳି ହେବେ ନାହିଁ ।

ଯେତେବେଳ ଯାଏ ମଣିଷ ତାହାର ଏଇ ସଚ୍ଚୋଟପଣିଆ ରଖେ, ସେ ହୁଏ ଗ୍ରେସକେଲ୍ ଓ ଲାଇଟ୍ ପରି କୁକୁର—ପଶୁ । କିନ୍ତୁ ମଣିଷର ଇଚ୍ଛା ସେ କିଛି ଦିନ କିଛି ସୁବିଧା ପାଇଁ ପଶୁରୁ ମଣିଷ ହେବ । ନିର୍ବିକାର ହୋଇ ପରସ୍ତ୍ରୀକୁ ଓ ପରପୁରୁଷକୁ ନଜର କରିପାରିବ ।

ଗ୍ରେସକେଲ୍ ରାଜିହେଲା ନାହିଁ । ଲାଇଟ୍ ମାଲିକମାନଙ୍କ ପାଖରୁ ବିସ୍କୁଟ୍ ଖାଇଲା ନାହିଁ । ଲାଇଟ୍ ମାଲିକଙ୍କ ଘରକୁ ଆସିଥିଲା ବୋଲି ନଜର ନିଶାଣ ମୁତାମୁତି କଲା ନାହିଁ । ଗ୍ରେସକେଲ୍‌ର ମାଲିକଙ୍କୁ ଲାଗି ରହିଲା । ଫେରିଲା ବେଳେ ଧାଇଁଲା ଆଗେ ଆଗେ ।

ଆମର ଘର ଭଲ । ଆମର ଗରିବପଣିଆ, ମୂର୍ଖପଣିଆ, ମଫସଲିଆ ଗିରି ଭଲ । ତାଙ୍କ ଘରର ବିସ୍କୁଟ ଚଉକି, ଫ୍ରିଜ୍ ଓ ଟି.ଭି. ଭଲ ନୁହେଁ ।

ଗରିବର ଭଗବାନ୍ ଭଲ । ଗରିବର ଠାକୁର ଭଲ । ଗରିବର କାର୍ତ୍ତିକମହାତ୍ମ୍ୟ ସବୁଠାରୁ ଭଲ । ନଜର ଦୁର୍ଗାବାହନ ଓଷା, ସନ୍ତୋଷୀ ମା ଜଣାଣ, ଭାଗ୍ରତାରଣୀ ଭଜନ ଭଲ ।

ଥିଲେ ଥାନ୍ତୁ ଏଇ ସଂସାରରେ ଅନେକ ପ୍ରତ୍ୟକ୍ଷ ଠାକୁର ଠାକୁରାଣୀ । ଥାଆନ୍ତୁ ଅଶେଷ ସିଦ୍ଧ ଗାଦି, ସିଦ୍ଧ ପୀର ଓ ସାଧୁ ସିଏ ଆମର, ଆମେ ତାଙ୍କର ।

ଆମକୁ ଆମର ଅଳିଆ ଅସନା ରାସ୍ତାଘର, ଖାଇବାଘରର ବଡ । ଆମରିପରି ଅସମର୍ଥ ସ୍ତ୍ରୀ ବାଳକ ନୌକର ଭଲ । ଆମର ଗ୍ରେସକେଲ୍ ଖୁବ୍ ଭଲ । ଥିଲେ ଥାନ୍ତୁ ଅଶେଷ ଗୁଣଧର ଅସଂଖ୍ୟ ଲୋକ ।

http://oaob.nitrkl.ac.in

ଆମେମାନେ ବହୁତ୍ତ୍ ରାସକେଲ୍‌କୁ ଭଲ ପାଇ, ତାହାର ବିଶେଷଗୁଣକୁ ନଜର କରି ଅତି ଆନନ୍ଦରେ ଓ ଅତି ଉତ୍ସାହରେ । ରାସକେଲ୍ ଆମ ପାଖରେ ବସିଲେ ଆମର ମନ ଖୁସି ହୋଇଯାଏ ।

ଯେଉଁଦିନ ରାସକେଲ୍ ଲିଉଟର ମାଲିକକୁ ନାପସନ୍ଦ କରି ଫେରିଆସିଲା ସେ ଦିନ ରାସକେଲ୍‌ର ପଦୋନ୍ନତି ହୋଇଗଲା । ତାହାର ଭକ୍ତିର ସୂଚନା ମିଳିଲା ।

ରାସକେଲ୍‌କୁ ଗୋଟିଏ ପଟି ଦିଆଯିବାର ସ୍ଥିର ହେଲା ।

ବଜାରରେ ବୁଝାଗଲା ଯେ କୁକୁର ପଟିଟିଏ ଆଠଟଙ୍କା ।

—ଏଁ—ଲୁଟତରାଜ କେମିତି ହେଉଛି ? କୁକୁର ପଟି ଆଠଟଙ୍କା ?

— ବାବୁ ତୁମେ କ'ଣ ଦେହାତି କି ? ଖଣ୍ଡେ ଖବର କାଗଜ ପଚିଶ ପଇସା । ଆମ୍ବ ଟିଏ ଟଙ୍କାଏ । ଦୁଧ ଗିଲାସେ ଟଙ୍କାଏ । ସିଝା ଅଣ୍ଡା ସତୁରି ପଇସା । କାଗଜି ଲେମ୍ବୁ ଟଙ୍କାରେ ଦୁଇଟା । ଆଉ କୁକୁର ପଟି କ'ଣ ହେବ ଦଶ ପଇସା ?

—ନା, ଶସ୍ତା ପଟି କିଛି ।

—ହଁ ହବ । ଲାଲ୍ ଫିତା ଖଣ୍ଡେ ନେଇ ସିଲାଇ କରିଦେଲେ କୁକୁରକୁ ଭଲ ମାନିବ ।

ଫେରି ଆସିବାକୁ ହେଲା ଅତ୍ୟନ୍ତ କ୍ରୋଧରେ । କୁକୁର ପଟି କିଣା ଘଟଣାରେ ମଣିଷକୁ ଅପମାନ ଦିଆହୋଇଛି ତାହାର ଗରିବ ପଣ ପାଇଁ ।

ଅସମ୍ଭବ କଥା ଆରମ୍ଭ ହେଲାଣି ଏଇ ସଂସାରରେ । ହୋଟେଲରେ ଗରିବାନିଆ ମିଲଟିଏ ତିନିଟଙ୍କା ପଡ଼ୁଛି । ଗୋଟିଏ ଆଇସ୍‌କ୍ରିମ୍ ତାହାଠାରୁ ବେଶି । ଅଣ୍ଡା ଖାଇଲେ ମିଲ୍ ସାଙ୍ଗରେ ସମାନ ।

ଆସଂଖ୍ୟ ଶଗଡ଼ ପଟିପାରୁ ନାହାନ୍ତି । କିନ୍ତୁ ଗହଳି କିଛି କମ୍ ନାହିଁ । ସମସ୍ତଙ୍କର ମନର ଭାବ ଓ ଗୃହିଣୀର ଭଙ୍ଗୀ ଗୋଟିଏ—ଯଦି ମାସକୁ ଟଙ୍କା ଶହେ ପାଞ୍ଚପାର ଅଣ୍ଡା ନ ଖାଇ ପାରିବ ଓ ସିନେମା ଦେଖି ନ ପାରିବ ତେବେ ଚାଲିଯାଅ ଏଇ ସହର ବଜାରରୁ ।

ଦରଜି ଯେତେ ପକେଟର ସଂଖ୍ୟା କମେଇଦେଉ ଅବା ପକେଟର ଆକାର ଛୋଟ କରିଦେଉ ଟଙ୍କା କମେଇବାର ତାକତ୍ ନ ଥିଲେ ବଞ୍ଚିବା ନିରର୍ଥକ ।

ଏଇ ସମସ୍ୟା ହେଉଛି କୁକୁରର ପଟିଟିଏ । ହରେକ୍ ମାଲ ଏକ ରୁପେୟା । ଠେଲା ଗାଡ଼ିରେ କୁକୁର ପଟି ରହୁ ନାହିଁ । ସେଠି ରହୁଛି ସାବୁନ ଖୋଲ, ଗୁ' ଛଣା ଓ ଜଉଛେଲା ।

http://oaob.nitrkl.ac.in

ଗ୍ରସକେଲ୍ ହେଉଛି ଗଣବର କୁକୁର । ଘରେ ସମସ୍ତେ ଖୋଜି ଗୋଟାଏ ସୁନ୍ଦର ପ୍ଲାଷ୍ଟିକ୍ ଫିଲ୍ମଙ୍କର ବେଲଟ୍ ପାଇଲେ । ତାକୁ କାଟି ଗ୍ରେଟ କରି ଗ୍ରସକେଲକୁ ଗଳାରେ ଦେଲେ ।

ଗ୍ରସକେଲ୍ ଭାରି ଖୁସିହେଲା—ସେ ଗୋଟାଏ ପଟି ପାଇଛି । ରଙ୍ଗ ସତରଙ୍ଗି ପରି ।

ଠିକ୍ ପରେ ପରେ ଗୋଲମାଲ ଆରମ୍ଭ ହୋଇଗଲା । ଗ୍ରସକେଲ୍‌ର ଭାଇ-ଭଉଣୀ ଦୁଇଜଣ ଲାଗିଗଲେଣି ବେଲଟ୍ ସାଙ୍ଗରେ । ଗ୍ରସକେଲ୍ ଲଢୁଥାଏ ସମସ୍ତଙ୍କ ସାଙ୍ଗରେ ବେଲଟ୍‌କୁ ରକ୍ଷା କରିବାକୁ ।

ସରକାରୀ କର୍ମଚାରୀମାନେ ତାଙ୍କର ପଟିର ସୁରକ୍ଷା ପାଇଁ କୋର୍ଟକଚେରୀକୁ ଡାକିଯାନ୍ତି ।

ଏଇ ବେଲଟ୍ କଳି ଚାରିଆଡ଼େ । ଓଡ଼ିଶା ସାହିତ୍ୟ ଏକାଡେମି, କଟକ ବାରବାଟି ଷ୍ଟାଡ଼ିଅମ୍, ଗ୍ରେଟ ଚାକର, ବଡ଼ ଚାକର, ହାଇକୋର୍ଟ, ଜଜ୍ ପାହିଆରୁ ଗ୍ରେଟ ପିଅନ ପର୍ଯ୍ୟନ୍ତ ସମସ୍ତଙ୍କର କାମ ବେଲଟ୍ ପିନ୍ଧିବା, ପିନ୍ଧାଇବା ଓ ବେଲଟ୍‌ର ସୁରକ୍ଷା କରିବା—ବନ୍ଦୋବସ୍ତ ବା ଚକବନ୍ଦୀ ପଟାପରି ।

ଗ୍ରସକେଲ ତାହାର ପଟିକୁ ଭଲ ଭାବରେ ଲଢିଲା । ଗୋଟାକୁ ମୁହଁରେ ଏତେ ରାଗରେ କାମୁଡ଼ି ଦେଲା ଯେ ଗ୍ରେଟ କୁକୁରର ରକ୍ତ ଧାଡ଼ିଏ ତଳେ ବୋହିଗଲା ।

ଠିକ୍ ହୋଇଛି—ଗ୍ରସକେଲ ପାନେ ଦେଇଛି । ତାହାର ପଟିରେ ଆଉ କୁକୁର ଗୁଡ଼ାକଙ୍କର କି କାମ ଯେ ଏତେ ଲାଗି ପଡ଼ିଛନ୍ତି ?

ଗ୍ରସକେଲ୍ ବି ଛାଡ଼ିବ କାହିଁକି ତାହାର ଅଧିକାରକୁ ! କୁକୁରଙ୍କର ପାଟି ଗୋଳ ଓ ମାଡ଼ ମରାମରି ବୁଝିବାକୁ ମାଆ ଆସି ପହଞ୍ଚିଲା । କାହାକୁ ସେ ନ୍ୟାୟ ଦେବ ? ସମସ୍ତେ ତାହାର କିଛି ସୁବିଧା ନ ପାଇ ଖଣ୍ଡିଆ ନାକକୁ ଚାଟି ପକାଇଲା ।

ଏଣେ ଗ୍ରସକେଲ୍ ଯାଇ ମାଆଠାରୁ ଦୁଧଖାଇବା ଆରମ୍ଭ କରିଦେଲାଣି । ଲଢିବାକୁ ବଳ ଦରକାର ଆଉ ମାଆକୁ ହାତରେ ରଖିବା ଦରକାର ।

ମାଆ ଆସିଲା ପରେ କଳି ଭାଙ୍ଗିଲା । ଏମିତି ମନ୍ତ୍ରୀ, କଲେକ୍ଟର ବା କେନ୍ଦ୍ର ପ୍ରତିନିଧିଙ୍କୁ ପାଇଗଲେ ନଜର କୁକୁର ପଟି କଳି ବନ୍ଦ ହୋଇଯାଏ ।

ଏଇ ବେଲଟ୍ ବା ପଟି ହେଉଛି ଆମର ପେଟପାଟଣାର ଚାବି—ଠିକ୍ ଖାଉଟି କାର୍ଡ ପରି ଏ—ବି—ସି—ବା ସ୍ପେସାଲ ଯେଉଁ କାର୍ଡ ମିଳୁ ତାକୁ ରଖିବା ଦରକାର । ଏଥିରେ ଦର୍ଶନ ନାହିଁ, ଅଛି କେବଳ ନଜର ସ୍ଥିତି ।

http://oaob.nitrkl.ac.in

ଏହାର ସୁରକ୍ଷା ପାଇଁ ସାଧୂଙ୍କର ଝୁଙ୍ଗୀ, ଧର୍ମସ୍ୱାଙ୍କର ମଠ, ମେଲା ମହୋତ୍ସବର ଅଗଣାରେ ସମସ୍ତେ ତତ୍ପର । ରାସକେଲ୍‌ର ପଟି ହେଉଛି ସେଇ ତତ୍ପରତାର ମଣିଷ ସୁଲଭ କାମ ।

ଡାକ୍ତରଙ୍କର ଆପରନ, ଓକଲର ପୋଷାକ, ପୁଲିସର ବ୍ୟାଜ୍ ସବୁଗୁଡ଼ାକ ହେଉଛି ସଂସାରର ମାସ୍ଟାର ଜୀବନ୍ତ କାର୍ଯ୍ୟ । ଧର୍ମ, ତତ୍ତ୍ୱ ଓ ଦର୍ଶନରେ ଏହାର ବିରୋଧ ନାହିଁ ।

ସିଆ ସୁନ, ଲମ୍ବା ଟୋପି; ଗୋଲ ଗୋପି, କାଥଲିକ ପ୍ରୋଟେଷ୍ଟାଣ୍ଟ, ରାମାନନ୍ଦୀ ଓ ଚୈତନ୍ୟ ତିଲକ ଅବା ଦେଉଳରେ ତ୍ରିଶୂଳ କିମ୍ବା ଚକ୍ର ପ୍ରତ୍ୟେକ ବିଷୟରେ ଏଇ ଏକାକଥା ।

ରାମ ବଡ଼ କି କୃଷ୍ଣ ବଡ଼ ? ଶିବ ବଡ଼ କି ବିଷ୍ଣୁ ବଡ଼ ? ଏ ସବୁ ହେଉଛି ରାସକେଲ୍‌ର ପଟି ପାଇଁ ଲଢ଼ିବା ଧାରାର ଗୋଟିଏ ସ୍ତର ।

ଯାହାକୁ ଯାହା ମିଳିଯାଇଛି ତାକୁ ରକ୍ଷା କରିବା ହେଉଛି ସତ୍ତ୍ୱରକ୍ଷାର କର୍ତ୍ତବ୍ୟ । ରେଳଗାଡ଼ିର ବସିବା ସ୍ଥାନ ସଂରକ୍ଷଣ, ଚାକିରିରେ ପଦୋନ୍ନତି, ଟ୍ରେନର ବାଟ ନ ଛାଡ଼ିବା, ଭଡ଼ାଘରୁ ନ ହଟିବା—ସବୁ ହେଉଛି ରାସକେଲ୍‌ର ପଟି ପାଇଁ ଯୁଦ୍ଧ ।

ରାସକେଲ୍ ବିଚାରେ ଶାନ୍ତିରେ ରହିପାରିଲା ନାହିଁ । ଥରକୁ ଥର ତାହାର ପଟି କାମୁଡ଼ିବାକୁ କୁକୁର ଆସନ୍ତି । ସମସ୍ତଙ୍କୁ ପଟି ଦେବା ମାଲିକ ବ୍ୟବସ୍ଥା କରିପାରୁ ନାହିଁ । ତାହା ହେଲେ ସେ ପକ୍ଷପାତ କରୁଛି । ପକ୍ଷପାତ ହେବାର ସୁରାକ ପାଇଲେ ବାହାରିଲା କୋଟକଚେରି ।

ତାଙ୍କୁ ଡର ଓଡ଼ିଶାର ପ୍ରବଳ ପ୍ରତାପୀ ସରକାର ମନ୍ତ୍ରୀ, କମିସନର, ଡିରେକ୍ଟର ଆଦି ଅସଂଖ୍ୟ ଚାକିରି ଧୁଇଗୁଣରୁ ଦଶଗୁଣ କରିବାକୁ ବାଧ୍ୟ ହେଉଛି । ଜଣଙ୍କର ପଟି ହୋଇଗଲେ ସମସ୍ତଙ୍କର ପଟି ହେବ ।

ଠିକ୍ ସଉତୁଣୀ କଳି ପରି—ଏକା ଲୁଗା, ଏକା ଗହଣା କରାହେବ । ହେଲେ ବି ଦଳ୍ ଏକା ହୋଇପାରୁ ନାହିଁ । ସରକାରୀ ପ୍ରାଇଜ୍, କିତାବ୍ ଯେତେ ଦେଲେ ବି ସମସ୍ତଙ୍କୁ ସନ୍ତୋଷ ଦେଉ ନାହିଁ । ଅସନ୍ତୋଷ ବଢ଼ି ଚାଲୁଛି । ଭୋଜିରେ ମୋତେ ପ୍ରଥମ ଦଫାରେ ନ ଖୁଆଇ ଚତୁର୍ଥ ଦଫାରେ ଖାଇବାକୁ ଦିଆହେଲା ? ଡାକ୍ତରଖାନା ଖଟିଆ ମତେ କାହିଁକି ପନ୍ଦର ଦିନ ଯାଏ ନ ମିଳିଲା ? ମୋ ପିଲା କାହିଁକି ସମସ୍ତଙ୍କ ମୁହଁରେ ଚୂନ କାଳି ବୋଳି ଫାଷ୍ଟ ନ ହେଲା ?

ରାସକେଲ୍‌କୁ ପଟି ପିନ୍ଧାଇ ନ ଥିଲେ ସେଇ ଘରେ ସମସ୍ୟା ନଥାନ୍ତା । କିନ୍ତୁ ସରକାର ଭାବୁଛନ୍ତି ଜଣେ ଅଧେ କିଛି ପାଇଗଲେ ସମସ୍ତେ ଧାଇଁବେ କାମ କରି ସୁପାରିସ୍ ନେବାକୁ ।

http://oaob.nitrkl.ac.in

କେହି ରାଜି ନୁହେଁ ସେ କାମ ପାଇଁ । ସମସ୍ତେ ଭାବୁଛନ୍ତି ଯେ ଦେଶର ମନ୍ତ୍ରୀମାନେ ସମସ୍ତଙ୍କୁ ହସେଇ ହସେଇ ଟାଲି ପ୍ରାଇଜ୍ ଓ ବକ୍‌ସିସ ଦେଉଥିବେ । ବଡ ସାହେବ ଟେବୁଲ ବା ସେଇଠି ବସି ଚିତ୍ରର ନାଁ କେତେ ବେଳ ଚାଲି ସେ ଘଣ୍ଟା ତାଙ୍କର ମାମୁଲି ଅସୁଲ କରିବାର ଯୋଜନା କଲପରି ।

ଇଏ ହେଲା ବଞ୍ଚିବାର ସ୍ଲୋଗାନ୍ ।

ଆସି ଯାଇ ମାଇନେ ପାଇ
କାଜ୍ କରଲେ ଓଭରଟାଇମ୍ ଦିଇ ।

ସମାନ କାମକୁ ସମାନ ଦରମା ହେଉଛି ନ୍ୟାୟପରତାର ଅର୍ଥନୀତି । କିନ୍ତୁ କାମ କେମିତି ସମାନ ହେବ ବୁଝିବାକୁ ହାକିମ ଦରକାର । ହାକିମଙ୍କୁ ବୁଝାଇବାକୁ ଅଲବତ ବହୁତ ଅନ୍ୟାୟ ଦରକାର ।

ହାକିମ ତ ମଣିଷ । ସେ ପଶୁ ହୋଇଥିଲେ ହଠାତ୍ ବୁଝିଯାନ୍ତେ । ମଣିଷ ହୋଇଥିବାରୁ ସେ ଯନ୍ତ୍ର ଲଗାଇ ବୁଝନ୍ତି । ଦୁଇ ପାଞ୍ଚ ସତର ସତେଇଶି ମିଶାଇବାକୁ କମ୍ପ୍ୟୁଟର ଖୋଜନ୍ତି । କି ବେମାରି ହୋଇଛି ବୁଝିବାକୁ ଡାକ୍ତର ବାବୁ ପ୍ରଥମେ ଦାନ୍ତ, ରକ୍ତ, ମୂତ୍ର, ମଳ ଆଦି କେମିତି ଜାଣିବାକୁ ଚାହାନ୍ତି । ସେଇଠୁ ଅଭିଧାନରୁ ଅକ୍ଷର ଦେଖି ବାରି ବାରି ଶବ୍ଦକୁ ପାଇ ଅର୍ଥ ବୁଝିଲା ପରି ହଠାତ୍ ତାଙ୍କର ନିଦାନ କହି-ଦିଅନ୍ତି ।

—କ'ଣ ଡାକ୍ତର ସାହେବ—ଏତେ କଥା କ'ଣ ପାଇଁ ଦରକାର ?

—ବୁଝିଲେ ନାହିଁ କି ଗୋଟାଏ ମିଲ୍ ଖାଇବା ଆଗରୁ କେତେ କଟା ବଟା ସିଝା ଭଜା ଲାଗୁଛି । ଶେଷରେ ବାହାରୁଛି ଭୋଜନଟାଏ । ରୋଗକୁ ଓଲାଙ୍କ ପରି ନ ଚିହ୍ନି ଆମେ ପୂରା ପରୀକ୍ଷା କରି ଚିହ୍ନୁଛୁ, ସ୍ୱାସ୍ଥ୍ୟର ନିୟମ ଅନୁସାରେ ।

—ହଁ, ସାର୍, ହବ ତ । ସୁସ୍ଥ ଲୋକ ଦେଖିଲେ ଚିହ୍ନା ପଡ଼ନ୍ତି ।

—ଚିହ୍ନା ପଡ଼ିବେ ନାହିଁ କେମିତି ? ଯାହାର ଯେତେ ମାଲ ଅଛି ତାହାର ସ୍ୱାସ୍ଥ୍ୟ ସେତେ ଡେଙ୍ଗା । ଯାହାର ଯେତେ ଜ୍ଞାନ ତାହାର ମୁଣ୍ଡ ସେତେ ଖାଲି ।

—ସାର୍, କୁକୁର ମଣିଷ କ'ଣ ସମାନ ?

—ଔଷଧ ସମାନ । ତେବେ କୁକୁରକୁ ଚାହିଁଦେଲେ ଜାଣିହୁଏ ତାହାର ଦେହ କେମିତି ଅଛି । ଆଖି ନାକ ଦେଖିଲେ ଜାଣିହୁଏ । କିନ୍ତୁ ମଣିଷ ଏଡ଼େ ବଦମାସ୍ ଯେ ତାକୁ ଦେଖି ତମେ ଠିକ କି ଭିତରେ କି ମିଛୁଆ କିଛି ଠଉରାଇ ପାରିବ ନାହିଁ । ଅଭି

http://oaob.nitrkl.ac.in

ତାହାର ବେମାରି ମୁଣ୍ଡର କି ଗୋଡର କି ପେଟର ଅବା ମନର ତୁମେ ଜାଣିବ କେମିତି ?

—ଠିକ୍ ସାର ! ଆମର କୁକୁର ଆମକୁ କହିଦିଏ ଯେ ଆମେ ଓଲୁ । ସେ ଆମକୁ ଅକ୍ତିଆର କରି ରଖିଛି ।

—ଶୁଣ ଚଲ୍କ୍ ସେମାନେ । ଥରେ ତାଲଚେର ଉଆସରୁ କଟକର କନିକା ଉଆସକୁ କୁକୁର ଆସୁଥିଲା ମଟରରେ । କଟକର ମହାନଦୀ ଘାଟ ପାଖରେ କୁକୁରକୁ ବାହାରକୁ ଅଣାହେଲା ତାର ଏକ—ଦୁଇ ପାସ୍ ପାଇଁ । କୁକୁର ପାର । ...ଖୋଜି ଖୋଜି ରଜା ସାହେବ ଫେରିଲେ ତାଲଚେର । ଦେଖିଲେ ଯେ କୁକୁର ଷାଠିଏ ମାଇଲ ବଣ ପର୍ବତ ପାର ହୋଇ ତାଲଚେର ପ୍ରାସାଦକୁ ଫେରିଯାଇଛି ।

— ଆମର କୁକୁରଟା...

—କି କୁକୁର ?

—ମିଶା, ଦୋମିଶା ... ?

—ଏବେ ଖାଣ୍ଟି ମିଳୁଛି କେଉଁଠି ? ତଟକା ମାଛ, ତଟକା ତରକାରି, ତଟକା ପରିବା ମିଳୁ ନ ଥିଲା ବେଳେ କୁକୁର କ'ଣ ମଣିଷ ବି ଆଉ ତଟକା ମିଳୁ ନାହିଁ । ସମସ୍ତେ ଖାଲି ଚଳଚ୍ଚିତ୍ର ଛବି ।

—ହଁ, ଯୌତୁକ ବି ଆଉ ତଟକା ମିଳୁ ନାହିଁ ।

—କେମିତି କହିଲ ?

—ଏବେ ଯୌତୁକ ହେଲା ଗୃହୋଚିତ ଜିନିଷ—ଥଣ୍ଡା ଆଲମାରି, ଚଞ୍ଚଳ ତରକାରି, ଘର ସିନେମା, ଆଉ ଫଟଫଟିଆ । କୋଟ ଦାମ୍ ହେଲା ଲକ୍ଷେ ଟଙ୍କା । ଏଥିରୁ କମ୍ ବେଶି ହୋଇଗଲେ ପାସ୍ ଫେଲ ଓ ଆତ୍ମହତ୍ୟା ଓ ହତ୍ୟା ।

—ଏମିତି ଅବସ୍ଥାରେ କୁକୁର ତଟକା ରହିଲା କେମିତି ?

—ତାହାର ବୁଦ୍ଧି କମ୍ ନୁହେଁ ଯେ ବଗୁରର ହୃଦୟ ଅଛି । ତାଲଚେର ପ୍ରାସାଦର କୁକୁରର ହୃଦୟ ଥିବାରୁ ଭକ୍ତି ଅଛି । ଭକ୍ତି ଥିବାରୁ ପ୍ରଭୁଭକ୍ତି ଅଛି । ମଣିଷର ହୃଦୟ ଥିଲେ ତାହାର ଭକ୍ତି ଆସେ, ଅନୁରକ୍ତି ବଢ଼େ । ସେ ଏକ-ପତ୍ନୀବ୍ରତ ରଖେ । ସତୀ ଗୃହିଣୀ ହୁଏ ।

—ଆମେ କୁକୁରଙ୍କୁ ମନେରଖୁ ତାହାର ଭକ୍ତି ପାଇଁ । କର୍ମୀ ମନେରଖେ ନେତାଙ୍କୁ । ସମସ୍ତେ ସମସ୍ତଙ୍କୁ ଆଦର କରନ୍ତି ସେହି ଭକ୍ତି ପାଇଁ ।

http://oaob.nitrkl.ac.in

ଗ୍ରସକେଲ୍ ସମାନ ହୋଇପାରିବ ଅନ୍ୟ ଜାତିଆ ଭଲ କୁକୁରଙ୍କ ସାଙ୍ଗରେ । ତାକୁ ଶିଖାଇଲେ ସେ ଖୁବ୍ ଧାର୍ମିକା ହୋଇଯିବ । ମାଲିକର ସୁନାମ ଅଣାଇବ ।

ଆହାରେ ଆଶା—ସମସ୍ତେ ସମସ୍ତଙ୍କୁ ସୁନାମର ମାଳା ଦେବେ କେମିତି ? ମଣିଷ ତାହାର ନିଜର ସ୍ତରରେ ଖୋଜିଲେ ସୁନାମ ପାଇବ । କିନ୍ତୁ ନିଜର ସ୍ତରକୁ ଗ୍ରାଡ଼ି ଉପର ତଳ ହେଲେ ସୁନାମ ଆସେ ନାହିଁ—ଲୋପ ପାଇଯାଏ ।

ଭେଜାଲକୁ ସଂସାର ଫିଙ୍ଗିଦିଏ । ରଖେ—ପୁଣି ଫୋପାଡେ । ସାପ, ଶୁଅ, ନେଉଳ ଓ ପାରାଙ୍କୁ ସେମିତି ଅଖିଦଶିଆ ସ୍ଥାନ ଦିଆଯାଇ ପାରିଲାନାହିଁ । କୁକୁର ଗ୍ଲଲିଗଲା ସମସ୍ତଙ୍କ ଉପରକୁ ।

ମଣିଷ ମନେରଖିଛି ଭକ୍ତ, ସାଧୁ ଓ ସାଧକଙ୍କୁ । ପୁଣି ସେ ମନେରଖିଛି କୁକୁରଙ୍କୁ । ଗ୍ରସକେଲ୍ ଘରେ ପ୍ରସ୍ତାବ ଆସିଲାଣି ଗ୍ରସକେଲ୍‌ର ଫଟୋ ଉଠାଇବାକୁ ।

ସେତେବେଳକୁ ଗ୍ରସକେଲ୍‌ର ବେକର ପଟି ଖଣ୍ଡ ଝଣ୍ଟ ହୋଇଗଲାଣି । ଆଉ କାଲି ଏମିତି ନାହିଁ କୁକୁରଙ୍କ ଭିତରେ । ସମସ୍ତେ ସମାନ । କେହି ବଡ଼ ନୁହନ୍ତି । କୌଣସି ଷ୍ଟେଟର ମନ୍ତ୍ରୀ ହୋଇ ନାହିଁ । ସେ ଯେତେ ଭଲ ଅନ୍ୟ କୁକୁରମାନେ ସେତେ । ସ୍କୁଲର ମାଷ୍ଟ୍ର, ପ୍ରତିଯୋଗିତାରେ ବିଚାରକ ଓ ଗ୍ରାକିଣିରେ ବସୁଥିବା କମିଟିମାନ ପ୍ରକୃତ ମୂଲ୍ୟ ଦେବେ ।

ଏଇ ପ୍ରକାରର ମୂଲ୍ୟ ଓ ଓଜନ ହେଲା ସଂସାରର ସମସ୍ୟା । ଏହି ମାପ ଓଜନ କାମ କୋର୍ଟକଚେରୀରେ ଗ୍ଲଲିଛି । ପରିବାରରେ ଓ ଘରେ ଗ୍ଲଲିଛି । ମାପ ଓଜନରେ ଗଲତି ଦେଖାଦେଲେ ଗୋଲମାଲ ହେଉଛି । ଏବେ ଗୋଲମାଲ ବଢୁଛି । ତେଣୁ ଜଣାପଡୁଛି ଯେ ମାପ ଓଜନ ବିଭାଗ କାମ ଝିଇଗ୍ନ ହେଉଛି ।

ଭଗବାନଙ୍କର ଆସ୍ଥାନରେ ବି ଚାଲିଛି ତିଲି ମାପ ଓଜନ ଗ୍ଲଲିଛି । ଖରାପ ଲୋକ ଉପରକୁ ଗ୍ଲଲିଯାଉଛି । ତାକୁ ଠେଲି ଝସାଇଲାବେଳେ ସେ ଗ୍ଲଲିଆସୁଛି କଚେରି ମିସିଲକୁ ।

ତାହାର ଅଭିଯୋଗ ଯେ ଥରେ ସେ ମାପ ହୋଇ ଯେଉଁ ସ୍ଥିତି ପାଇଥିଲା ସେ ଆଉ ବଦଳିପାରେ ନାହିଁ । ପରୀକ୍ଷାରେ ଥରେ ନମ୍ବର କି ବୟସ ଅବା ବାପ ନାଁ ଭୁଲ ଉଠିଗଲେ ତାକୁ ଆଉ ବଦଳାଯାଇପାରିବ ନାହିଁ ।

ଗ୍ରସକେଲ୍‌କୁ ସେମିତି ଆଗ ଉପରକୁ ଉଠାଇବାକୁ ପଡ଼ିବ । ସେ ପ୍ରତିଦିନ ଅଣ୍ଡା ମାଂସ ଖାଉ ।

http://oaob.nitrkl.ac.in

ସାଙ୍ଗପିଲାଙ୍କଠାରୁ କଳଗୋଳରେ ମାଡ଼ ଖାଇଗଲେ ଘରେ ଗଜାବୁଟ ଖାଇ ଦଣ୍ଡ ବୈଠକ କରି ବଳ ବଢ଼ାଇବା ପରି ଗ୍ରାସକେଲ୍‌କୁ ବନ୍ଧୁଆ କରି ନ ପାରିଲେ ଖାତିର ରହିବ ନାହିଁ ।

ଅଣ୍ଡା ଓ ମାଂସ ଦାମ୍ 'ବେଶି ନୁହେଁ । କିନ୍ତୁ ସେତିକ ଅଣାଇବାକୁ ଜଣେ ଲୋକକୁ ଦିନକୁ ଦଶଟଙ୍କା ବା ମାସିକ ଅଢ଼େଇଶହ ଟଙ୍କା ଦରକାର । ସେତିକ ଆଣି ପାରିଲେ-ତିଆରି କରିବାର ସିଙ୍କି ରହିଛି ।

ସୁବିଧାରେ କିଛି ହୋଇପାରୁ ନାହିଁ । କୁକୁରକୁ ନେଇ ମାଂସ ଦୋକାନ ପାଖରେ ବୁଲାଇବା କାମରେ ଅସଂଖ୍ୟ ସ୍ଥାନୀୟ କୁକୁରଙ୍କର ଆପତ୍ତି । ତେଣୁ ଗ୍ରାସକେଲ୍‌କୁ ଘରେ ରଖି ବନ୍ଧୁଆ କରିବାକୁ ହେବ । ସେଥିପାଇଁ ନିଜକୁ ଝୁଙ୍ଗିବାକୁ ହେବ ।

ଓକିଲ ଓ ମହକିଲ ଏକାଠି ଦୁହେଁ ଲାଭବାନ୍ ଓ ମୋଟା ହୋଇପାରିବେ ନାହିଁ । ଡାକ୍ତର ଓ ରୋଗୀଙ୍କ ଭିତରୁ ଜଣେ କ୍ଷତି ସହିଲେ ଆର ଜଣକ ଲାଭ ଉଠାଇବ । ଏପରିକି ସ୍ୱାମୀ ସ୍ତ୍ରୀ ଭିତରେ ମଧ୍ୟ ଜଣେ ତଳକୁ ଯିବାକୁ ବାଧ୍ୟ ।

ମହାଭାରତ ଯୁଦ୍ଧରେ ବି ଜଣେ ସେନାପତି ଅଧୀନରେ ଆଉ ଜଣେ କାମ କରି ନାହିଁ । କୁକୁରମାନେ ସେମିତି ତାଙ୍କର ଦାବିରେ ଅଟଳ—ଠିକ୍ ସରକାରୀ ଅଫିସରମାନଙ୍କ ପରି ।

ଦି'ଦିନ ଗ୍ରାସକେଲ୍‌ର ହେପାଜତ କଲାପରେ..ବାଧ୍ୟରେ ଗୋଟାଏ ଭଲ କମ୍ପିରରେ ଛନ୍ଦି ଗ୍ରାସକେଲ୍‌କୁ ବାହାରକୁ ନେବାକୁ ପଡ଼ିଲା ।

—କି କୁକୁର ଏଇଟା ?

—ବିଲାତି ଶିକାରୀ କୁକୁର । ମାଆ ଯେମିତି କହୁଥାଏ ମୋ ପିଲା ଖାଏ ନାହିଁ କି ପଢ଼େ ନାହିଁ । ସେମିତି ନ ଖାଇ ନ ପଢ଼ି ଝଣ୍ଟୁପରି ମୋଟା ହୋଇଛି ଓ ଖବର କାଗଜରେ ନାଁ ବାହାରୁଛି ।

ତେଣୁ ଗ୍ରାସକେଲ୍‌ର ଗୁଣଗ୍ରାମର ଗୋଟାଏ ପ୍ରଚାର କରାହେଉଥାଏ । ସେ ଆଖି ବୁଜି ଶତ୍ରୁକୁ ଓ ଚୋରକୁ ଚିହ୍ନିପାରେ । ତାକୁ ନ ଦେଲେ ସେ ଦୁଧ ଗିନାରେ ବା ଆଇଁଷିଆ ଥାଳରେ ମୁହଁ ମାରେ ନାହିଁ ।

ଗ୍ରାସକେଲ୍ ରହୁଥାଏ ମଜାରେ । ସେ ଘର ଲୋକଙ୍କଠାରୁ ଉଚ୍ଚରେ । କାରଣ ଗ୍ରାସକେଲ୍ ପ୍ରତି ସମସ୍ତଙ୍କର ଖାତିର ଅଛି । ଘର ଲୋକଙ୍କ ପାଇଁ କିଛି ନାହିଁ ।

http://oaob.nitrkl.ac.in

ସାରା ବର୍ଷର ସମସ୍ତଙ୍କୁ ଝୁରି ଆସି ପହଞ୍ଚିଯାଏ ଗୋଟାଏ ଦାଣ୍ଡ—ଗୋଟିଏ ଯୁବତୀ । ଯାରେ ସେ ମନକୁ ନେଇଗଲେ ଏଣେ ମନ ଆପଣା ଇଚ୍ଛାରେ ବାହାର ଆସେ ଆଉ ସମସ୍ତଙ୍କଠାରୁ—ମାଆ, ଜେଜେ ମା, ମାଉସୀ, ପିଉସୀ, ନାନୀ ସମସ୍ତଙ୍କ-ଠାରୁ । ହୃଦୟହାରିଣୀ ଆସିଛି ।

ରାସକେଲ୍ ସେମିତି ନେଇଯାଉଥିଲା ସବୁ । ଯେତେ ପରିଚର୍ଯ୍ୟା ପାଉଥିଲା ସେତେ ସେ ବଡ଼ ହୋଇଯାଉଥିଲା ।

ତାହାର କାମ ଖାଲି ଶୋଇବା—ପଲଙ୍କଲଗା ହୋଇ ମନୋହାରିଣୀ ଯେମିତି ଶୁଣିଥାଏ । ଯାହାର ଗୁଣ କି ରୂପ ଅଛି ସେ ଏମିତି ହଠାତ୍ ବଦଳିଯାଏ । ସମାଦର ପାଇଲେ ଉଦୁଆ ଲେଖକ ଏକାବେଳେକେ କାଢ଼ିମର୍ଦ୍ଦନ ହୋଇ ବାହାର ଚୁଲିଲି ପରି ।

ରାସକେଲ୍ର ଭୁକାଭୁକ କରିବା ଦରକାର ନାହିଁ । ବିଚରା ଆମରି ପିଲାଙ୍କ ପରି ସେ ପରୀକ୍ଷାକୁ ନ ଯାଉ । ଖାଇ ପିଇ ରହିଥାଉ ଘରେ । ପରୀକ୍ଷାକୁ ଗଲେ ଆଗ ପଛ, ସରସ ନରସ, ବୋକା ମୂର୍ଖ ହୋଇଯିବ ।

ତେଣୁ ରାସକେଲ୍ ହୋଇଥାଏ ବଡ଼ ହାକିମଙ୍କର କୃପାର ପାତ୍ର ପରି ।

ଗଲି ଅଇଲାବେଳେ ରାସକେଲ୍କୁ ଝୁଣ୍ଟିଲେ ରାସକେଲ୍ ବିରକ୍ତ ହୁଏ ନାହିଁ । ଆଉ ଲୋକ ତାକୁ ବଣ୍ଟୁ—ବଣ୍ଟୁ କରି ଗୋଳିଯିବ ।

ଖାଇଲାବେଳେ ତାକୁ ନିମନ୍ତ୍ରଣ ହେବ ଖାଇବା ପାଇଁ । ଏତେ ତରତର ହେଇ ଲାଭ କ'ଣ ? ଏଇତ ହେଲା ଗୋଟାଏ ପିଣ୍ଡା ଓଲୁ ଘର ।

ଏଠି ପାଣି ଗଡ଼େଇ ପିଇବାକୁ କେହି ରାଜି ନୁହନ୍ତି । ହାତରେ ବାଢ଼ି ଖାଇବାକୁ ମଧ୍ୟ ରାଜି ନୁହନ୍ତି । ମନକୁ ମନ ନିନ୍ଦରୁ ଉଠିବାକୁ ରାଜି ନୁହନ୍ତି । ରୋଜଗାର ନ କରି ଖର୍ଚ୍ଚ କରିବାକୁ ରାଜି । ପରିଶ୍ରମ ନ କରି ପୁରସ୍କାର ପାଇବାକୁ ତିଆର ।

ଏହିସବୁ ଘର ହେଲା ଏଇ ସୃଷ୍ଟିରେ ଇନ୍ଦ୍ରଭୁବନ । କରି ଧରି ସମସ୍ତେ ରହି ପାରିବେ କିନ୍ତୁ, ନ କରି ନ ଧରି କେଇଜଣ ଭାଗ୍ୟବାନ୍ ହେବେ ?

ରାସକେଲ୍ର ଭାଗ୍ୟ ସେମିତି ଝାଣ ତାହାର ଦେହରୁ କାଲେ ଟିକିଏ ରକ୍ତ ପିଇଯିବ ସେଥିପାଇଁ ଅନେକ ଆଖି ଜଗି ରହିଛନ୍ତି । ରାସକେଲ୍ ଯେମିତି ମନେକରି ଗାଧୋଇବ ଓ ଧୋଇହେବ, ସେଥିପାଇଁ ଅନେକ ଚେଷ୍ଟା ରହିଛି ।

—ଯାହାହେଉ ବିଚରା କୁକୁରର ଭାଗ୍ୟ ତେଜ ।

http://oaob.nitrkl.ac.in

—ମୋଟେ ନୁହେଁ । ଆମର ଭାଗ୍ୟ ଭଲ ଯେ ଏତେ ସୁନ୍ଦର କୁକୁର ପାଇଛୁ । ହେଲେ ଦିନକୁ ଦ'ଟଙ୍କା ଖରଚ ହେଉଛି—ତାହାର ଖିଆପିଆରେ ।

—କେତେ ? ଦ' ଟଙ୍କା—ସେଠି ସେ ସିନେମା ମାଲିକଙ୍କର କୁକୁର ପାଇଁ ଦୈନିକ ତେଇଶି ଟଙ୍କା ବଜେଟ୍ ।

—ଏଁ—ତେଇଶି ଟଙ୍କା ? କ'ଣ ହୁଏ ଏତେ ଟଙ୍କା ?

—ସେ କଥା କିଏ କହିବ ? ଯିଏ ଯେତେ ଦୂରକୁ ଯାଇଛି ସେଇ ସିନା ତାହାର ସମାଚାର କହିବ । ଦୈନିକ ତିନିଶହ ପାଞ୍ଚଶହ ଟଙ୍କା ଦେଇ ରହୁଥିବା ଲୋକ ଯାହା ସେହି ହୋଟେଲ କଥା କହିବ ତାକୁ କ'ଣ ଆମର ହେଡ୍ ପଣ୍ଡିତ ବା ହେଡ୍‌ମାଷ୍ଟର କହିବେ ?

—ରୁସକେଲ୍‌ର ଭାଗ୍ୟ ଖରାପ । ସେ ଗରିବ ଘରକୁ ଆସି ଦିନକୁ ମାତ୍ର ଦଇଟା ଟଙ୍କାରେ ନକୁଛୁଆ ହୋଇ ଚଳୁଛି । ସେ ଯଦି ସିନେମା ବାବୁଙ୍କ ଘରେ ରହିଥାନ୍ତା ତେବେ ତାହାକୁ ଉପଯୁକ୍ତ ଆସନ ମିଳିଥାନ୍ତା ।

—କିଏ କାହାର ଭାଗ୍ୟକୁ ବଦଳାଇ ପାରିବ ? କପାଳ ଲିଖନ ଏମିତି ଅମ୍ଭକୁ ଘର, ଜମି ମାଇପ, ପୁଅ ଶଶୁର ଓ ବୁଦ୍ଧି ଆଣି ରଖିଦେଇଛି ।

ରୁସକେଲ୍ ପ୍ରତି ମମତା ଆସେ । ନିଜର ସମର୍ଥହୀନତା ରୁସକେଲ୍ ପ୍ରତି ସ୍ନେହ ବଢ଼ାଇ ଦିଏ । ବୁଢାର ବୁଢୀ ପ୍ରତି ଅହେତୁକ ପ୍ରୀତି କଅଁଳି ଉଠିଲା ପରି । ବାପର ପୁଅର ଗୁଣ ଦୋଷ ପ୍ରତି ଅସୀମ ସ୍ନେହ ଉଚ୍ଛୁଳି ଉଠିଲା ପରି ।

ସଂସାର ଚାଲିଛି ଏହି ନିୟମରେ । ଏଇ ମାଟି ପିଣ୍ଡୁଳାର ଯେଉଁଠି ଯିଏ ଅଛନ୍ତି ସେଇଟା ତାଙ୍କର । ଯାହା ପାଖରେ ଯିଏ ରହିଛି ସେଇ କେବଳ ସେମାନଙ୍କର । ତୁଳନା କରି କେହି କେବେ ଭଲ ଜିନିଷକୁ ଖୋଜି ଲୋଡ଼ି ନେଇ ନାହିଁ ।

ରୁସକେଲ୍‌କୁ ମନ ଭିତରେ ଅନ୍ୟ ସାଙ୍ଗରେ ତୁଳନା କରିବାକୁ ମଧ୍ୟ ମନ ନାରାଜ । କାରଣ ତୁଳନା ବା କଟେଟ କରିବା ହେଉଛି ପ୍ରୀତିର, ମମତାର, ମାୟାର ଓ ସ୍ନେହର ବିରୋଧୀ ।

ଏହାକୁ ଆମେ କହୁଥାଉ ସନ୍ତୋଷ । ସନ୍ତୋଷରେ ତୁଳନା ନାହିଁ - ମାପ ଓଜନ ନାହିଁ । ସନ୍ତୋଷ ନ ଥିଲେ ଏଇ ସଂସାର ହୋଇଯାନ୍ତା କୁରୁକ୍ଷେତ୍ର ।

ଖୋଜି ଲୋଡ଼ି ପେଟର ଭୋକକୁ ମେଣ୍ଟାଇବାର ଗୁରୁଦାୟିତ୍ୱ ରୁସକେଲ୍‌ର ନାହିଁ । ସେ ଦେଉଛି ରାଜକୁମାର ପରି ସେ ରହିପାରିବ, କିନ୍ତୁ ଖଟିବା ଦରକାର ନାହିଁ ।

http://oaob.nitrkl.ac.in

ମନ୍ତ୍ରୀଙ୍କର ପିଲା ପରି ସେ ଝାଲ୍ ମଝିରରେ ବସିବ । ତାହାର ଏକମାତ୍ର ପରିଚୟ ରହିଥିବ ଯେ ସେ ମନ୍ତ୍ରୀଙ୍କର ପୁଅ ପରି—ଆମର କୁକୁର ସେ ଆମର ପୂର୍ବଜନ୍ମର ସାଥି ଓ ଏଇ ଜନ୍ମର ସାଥି ।

ଏଇ ସବୁ ଆଦର ସୋହାଗ ଭିତରେ ରାସକେଲ୍ ତାହାର ମାଆକୁ ଭୁଲି-ପାରେ ନାହିଁ । ଦେଖା ପଡ଼ିଲେ ଧାଇଁ ଯାଇ ମାଆର ମୁହଁକୁ ଶୁଙ୍ଘି ଦିଏ—ମାଆ କ'ଣ ତାକୁ କହେ କେଜାଣି ରାସକେଲ୍ ତାହାର କୋଳରେ ମୁଣ୍ଡ ଦେଇ ଆଖି ବୁଜିଦିଏ ।

ମାଆ କୋଡ଼ର ଦାମ ଏଇ ସଂସାରରେ ଅମୂଲ ମୂଲ । ସବୁ ପ୍ରକାରର ସୁବିଧା ଉପରେ ରହିଛି ମାଆ ।

ମାଆ ଚୋରଣୀ, ଦୋଷ୍ଟରୁଣୀ ଅଥବା ଯେତେ ଖରାପ ହେଇଥାଉ ପିଲାର ହୃଦୟରେ ତାହାର ସମାନ କେହି ନାହିଁ । ଯେଉଁମାନେ ମାଆକୁ ଦେଖିଲେ ସାଧାରଣ ଜଣେ ପରି ଭାବନ୍ତି, ସେମାନେ ଜାଣିବେ ଯେ ରାସକେଲ୍ ତାହାର ମାଆକୁ ସବୁଠାରୁ ଭଲପାଏ ।

ଯିଏ ମାଆକୁ ଶ୍ରଦ୍ଧା କରେ, ସେଇ ହେଉଛି ଧାର୍ମିକ । ରାସକେଲ୍ ପରି ଯିଏ ମାଆ କୋଡ଼ରେ ଶୋଇପାରେ ସେ ଈଶ୍ୱରଙ୍କୁ ଦେଖିପାରିବ । ମାଆର ଆଶୀର୍ବାଦ ଈଶ୍ୱରଠାରୁ ମାଆ ଜାଣିଥାରେ ଆସେ ବୋଲି ଅନେକ ଅନେକ ଲୋକ ଅସମର୍ଥ ଅବସ୍ଥାରୁ ସମର୍ଥ ହୋଇଯାଇଛନ୍ତି ।

ଈଶ୍ୱର ମଣିଷକୁ ଦେଖା ଦିଅନ୍ତି ମାଆ ରୂପରେ, କୁକୁର ରୂପରେ, ସାପ ରୂପରେ, କୁମ୍ଭୀରିଆ ନଈ, ପିଶାଚଘେରା ଅନ୍ଧାର, ଠକ ଜାଲିଆତ ଆଦି ଅନେକ ରୂପରେ । କିନ୍ତୁ ମାଆର ରୂପ ସମସ୍ତଙ୍କଠାରୁ ଅଧିକ ମୂଲ୍ୟବାନ୍ । ଏଇ ସଂସାର ବଞ୍ଚି ରହିଛି ମାଆମାନଙ୍କ ପାଇଁ—ଚରିତ୍ରହୀନ ଭ୍ରଷ୍ଟ ନଷ୍ଟ ଚରିତ୍ର ବାପାମାନଙ୍କ ପାଇଁ ନୁହେଁ ।

ଦିନେ ବି ରାସକେଲ୍ ମାଆଠାରୁ ଗାଳି ଖାଇ ନାହିଁ । ଥରେ ବି ମାଆ ରାସକେଲ୍ ଥାଳିରୁ ଖଣ୍ଡେ ହାଡ଼ କି ରେକେଟା ନେଇ ନାହିଁ । ରାସକେଲ୍‌ର ଭବିଷ୍ୟତ ପାଇଁ ଦିନେ ବି ବ୍ୟସ୍ତ ହୋଇ ନାହିଁ । ଆକାଶ ପରି, ପୃଥିବୀ ପରି, ପବନ ଓ ଆଲୁଅ ପରି ମାଆ ହେଉଛି ସତ ଭିତରେ ସତ । ମାଆ ନ ଥିଲେ ଏଇ ସଂସାର ନ ଥାନ୍ତା ।

ରାସକେଲ୍ ଘରେ ମାଆର ହୃଦୟର ଭାବକୁ ମୂଲ୍ୟ ଦିଆଯାଇପାରେ ନାହିଁ । ସବୁବେଳେ କଳିଗୋଳ ଶୁଭେ ଯେ ମାଆମାନେ ପିଲାଙ୍କୁ ବିଗାଡ଼ିବାରେ ଲାଗିଛନ୍ତି । ମାଆ ପ୍ରତିବାଦ କରେ ନାହିଁ । ସେ ବିଗିଡ଼ା ଓ ସଜଡ଼ାକୁ ବୁଝେ ନାହିଁ ।

http://oaob.nitrkl.ac.in

ଠାକୁରଙ୍କ ଅଖିରେ ବଗିଡ଼ିବା ଓ ସଜଡ଼ା ଏକାପରି ଗୁଣ । ଡିନ—ଗ୍ଲସ—ପାଞ୍ଚ ତାରକା ହୋଟେଲରେ ମନୋରଞ୍ଜନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରି ମଧ୍ୟ ପରିବାରଟିଏ ଖାଇ, ପିନ୍ଧି, ପଢି ସଂସାରରେ ପାଞ୍ଚଜଣରେ ଜଣେ ହୋଇପାରେ ।

ଏଇ ସଂସାରଟା ସାଧୁମାନଙ୍କର ବା ପାଜିମାନଙ୍କର ଠିକଣା ହୋଇପାରୁ ନାହିଁ । ପ୍ରତ୍ୟେକ ପାଜି ନିଜକୁ ସାଧୁଭାଳିକାରେ ରଖୁଛନ୍ତି । ପ୍ରତ୍ୟେକ ବୁଢା ନିଜକୁ ମଣିଷ ତାଲିକାରେ ସୁମାରି ନେଉଛନ୍ତି । ପ୍ରତ୍ୟେକ ମଣିଷ ନିଜକୁ ଦେବୋପମ କରି ଦେଖାଉଛନ୍ତି ।

ମୂଲିଆ ଓ ମାଲିକ ସମାନ । କୁକୁର ଓ ମାଲିକ ସମାନ । ମୂଲିଆର ଓ କୁକୁରମାନଙ୍କର ଆତ୍ମସମ୍ମାନ ଜ୍ଞାନ ଅଛି ।

ହେଇ ଟିମା ଦେଖିଲୁ ଗ୍ରେସକେଲ୍ ଏଠି ମଇଳା କରିଦେଇଛି । କିଏ ଭଦ୍ର-ଲୋକ ଆସିଯିବେ, ଟିକେ ସଫା କରିଦେଲୁ ।

ଗ୍ରେସକେଲ୍ ବାରଣ୍ଡା ଚଟାଣରେ ମୂତା ହଗା କରେ ନାହିଁ । ସ୍ତ୍ରୀକୁ କରିଛନ୍ତି ଗ୍ରେସକେଲ୍‌ର ଖାଇଭଉଣୀ । ସେମାନେ ଆଦର ପାଉ ନାହାନ୍ତି ବୋଲି ରାଗରେ ସେମିତି କରିଛନ୍ତି ।

—ଯିଏ କରିଥାଉ, ପିଣ୍ଡାଟିକୁ ସଫା ରଖିବା ଆମର କାମ ।

ଟିମା ଶୁଣି ଚାଲିଗଲା । ଏବେଠେଣେ ହେଉଥାଏ । ତାକୁ ପିଣ୍ଡାର ମଇଳା କଥା ମନେପକାଇଲେ ସେ ନ ଶୁଣିଲାପରି ହେଉଥାଏ ।

ଜଣାଗଲା ଯେ ଟିମା ସେ କାମ କରିବ ନାହିଁ ।

—ତେବେ କୁକୁର କ'ଣ ଆପେ ଆପେ ପିଣ୍ଡାକୁ ପହଁରି ପାଣି ଢାଳିବ ?

—ଏବେ ସୁବିଧାରେ ରହୁଛି । ସେ କ'ଣ ଏତିକ କରିପାରିବ ନାହିଁ ।

—ଭଲ ତୋର ଅକଲ, କୁକୁରକୁ ବଡ଼ାଇ ଦେଉଛୁ ।

—ନ ହେଲେ ନାହିଁ । ଆମେ ଯିନା ଘରର ଆଉ ଲୋକଙ୍କର କାମ କରିବୁ । ସ୍ତ୍ରୀ' ବୋଲି କ'ଣ କୁକୁରର କାମ କରିବୁ ?

ସେକ୍‌ଟୋକ୍ ଟିମା ମନା କରିଦେଲା ଯେ ଡିଉଟି ଭିତରେ ଗ୍ରେସକେଲ୍ କାମ ନାହିଁ । ସବୁ କାମରେ ଗୋଟାଏ ନିୟମ ଅଛି । ଅଫିସ ବାବୁ କ'ଣ ଫାଇଲ ନେଇ ଯିବାଆସିବା କରିବେ ? ସେ କାମ କରିବାକୁ ସାଇକଲରେ ବାନ୍ଧି ପାଞ୍ଚଟା ଫାଇଲ ନେଇପାରିବେ । କିନ୍ତୁ ଅଫିସ ଭିତରେ ସେ ଫାଇଲ ଧରି ଏ ବଖରା ସେ ବଖରା ହେବେ ନାହିଁ । ପିଅନର କାମ ସେଇଟା ।

http://oaob.nitrkl.ac.in

ସିଅନ କାମ କରିବ ଯଦି ତାକୁ ଟ୍ରୁଲ୍‌ଟିଏ ମିଳିଛି । ଠିଆ ହୋଇ ଘଣ୍ଟା ଘଣ୍ଟା ରହିବା ଟଅନର କାମ ନୁହେଁ । ତାକୁ ଚଉକା ଦିଅ ହେବ ନାହିଁ—ଟୁଲ୍ ଅବଶ୍ୟ ମିଳିବ ।

ସମସ୍ତଙ୍କର ମର୍ଯ୍ୟାଦା ଓ ମାନ ଅଛି । ଗୃହକର ଓ ମୂଲିଆଙ୍କର ମାନ ରହିଛି ଓ ରହିବ । ଘରେ ପଛକେ ଆମେ ଖାଲି ଚଟାଣରେ ଶୋଇପାରିବା, କିନ୍ତୁ ଦାମିକା ଚଟାଣରେ ଅଫିସରେ ତଳେ ବସିପାରିବା ନାହିଁ ।

ସାଇକେଲ୍ ପଶୁ ହେଲେ ବି ତାହାର ମାନ ସମ୍ମାନ ମର୍ଯ୍ୟାଦାବୋଧ ରହିଛି ।

ସକାଳ ସିନ୍ଦୂର ଫାଟିଲେ ସାଇକେଲ୍ ଚାଲିଆସେ ଗୋଟାଏ ଧୁଆର ପାଖକୁ ତାହାର ରୁଟି ବିସ୍କୁଟ ପାଇଁ ।

ରୁଟି ଦେଲେ ସେ ମୁହଁ ଟେକ ମାରିବରେ ପଚାରେ—କ'ଣ ବିସ୍କୁଟ ନାହିଁ ? ସକାଳୁ କେମିତି କୁକୁର ଭଳି ରୁଟି ଚୁଣ୍ଡାଇ ଚୁଣ୍ଡାଇ ଖାଇବ ?

ସାଇକେଲ୍‌ର ମାଲିକ ବ୍ୟସ୍ତ ହୋଇପଡନ୍ତି ଯେ ସାଇକେଲ୍‌କୁ ଚୁଟ୍ ନାହିଁ । ଲୋକେ ବ୍ୟସ୍ତ ହୋଇ ଅତିଷ୍ଠ ହୋଇପଡ଼ିଲେ ଯେ—କ'ଣ ପାଇଁ ୯ଜ ମୁଲକରେ ପକ୍‌କା ରାସ୍ତା, ନଳ କୂଅ ଓ ଉଠା ଜଳସେଚନ ନାହିଁ ?

ସଂସାର ଆଗେଇ ଗଲାଣି କେତେ ଦୂରକୁ । ଗାଁରେ ରେଡିଓ, ଡାକଘର ନ ଥିବ । ଆଉ ଲୋକେ ହିନମାନିଆ ହୋଇ ପଡ଼ିରହିଥିବେ । ତାଙ୍କର ଆତ୍ମସମ୍ମାନ ବାଧା ପାଉଛି ।

ଇଏ ହେଲା ଦାବୀର ଫର୍ଦ୍ଦ । ଏଇ ଦାବୀ ମଣିଷର ମର୍ଯ୍ୟାଦା ଓ ମାନର ତାଲିକା । ସମସ୍ତଙ୍କର ଯାହା ଦରକାର, ଆମର ମଧ୍ୟ ସେଇଆ ଦରକାର । ଆମର ଗାଁରେ କୋଠାବାଡ଼ି, ଟୁରିଙ୍ଗ ସିନେମା, ରେଡ଼ିଓ, ସ୍କୁଲ, ହୋଟେଲ, ଚା' ଦୋକାନ ଓ ମଦ ଦୋକାନ ଦରକାର ।

କଟକ ବା ରାଜଧାନୀରେ ସେମାନେ ଯଦି ମଦ ଖାଉଛନ୍ତି ଆମେ ଖାଇବୁ ନାହିଁ କାହିଁକି ? ହେଲା ଏବେ ତାଙ୍କର ବିଲାତି ଓ ଆମର ଦେଶୀ । ହେଲା ଏବେ ତାଙ୍କର ସୌଖୀନ କୋଠା—ଆମର ହେବ ଯାହିତାହି କୋଠା । ସେମାନେ ଯଦି ଟେଟୁଥାନ୍ତି ତେବେ ଅମେ ଶୋଇବା ନଇଲେ ଟେକିବା କାରଣ ଆମର ସବୁ କଥା ହେଉ ନାହିଁ ।

ମଣିଷ କ'ଣ କୁକୁର କି ବୁଝିପାରେ ତାହାର କଥା କେତେଦୂର ବୁଝାଯାଉଛି । ଯେତେ ଭୋକ କଲେ ବି ସକାଳେ ସେ ପଖାଳ ଖାଇବ ନାହିଁ । ପେଟ ଯେତେ ଥଳ

http://oaob.nitrkl.ac.in

ଥିଲ ହେଲେ ବି ସେ ଛୁଇଁବ ନାହିଁ । ଧୂପ ପକାଇଲେ ସେ ଗ୍ରହଣ କରିବ—ଅଲଣା ଡାଲିରେ ଲୁଣ ନ ପଡ଼ିବା ଯାଏ ଆମେ ମଣିଷ ଗ୍ରହଣ କରିପାରୁ ନାହିଁ ।

ଗ୍ରସକେଲ୍‌ର ଏଇ ମାନମର୍ଯ୍ୟାଦା ଜ୍ଞାନ ବାହାରୁଥିଲା ତାହାର ପେଟ ଅଣ୍ଡା ହେଉ-ଥିବାରୁ । ସେକ୍ରେଟରିଏଟ୍ ବାବୁମାନଙ୍କର ସେମିତି ଅନେକ କଥା ବାହାରୁଛି । ତାଙ୍କର ପଗାର ବଢ଼ିଥିବାରୁ । ଟିମାର ମଧ୍ୟ କେତେ ରୁଚି ଅଭିରୁଚି ବାହାରିଲାଣି ସହରରେ ରହଣୀ ପରେ ।

ଟିମା ଗାଁରେ ଶାଗକୁ ସୁଖ ପାଉଥିଲା । ମାଣ୍ଡିଆ ଜାଉକୁ ବିଗଡ଼ୁ ନ ଥିଲା । ଗୃରିମାସ ସହର ପବନ ତା'ଉପରେ ବୋହିଗଲା ପରେ କେହି ଟିମାକୁ ପାଞ୍ଚ ଦଶ ଟଙ୍କା ଦେଇ ଶାଗ କି ମାଣ୍ଡିଆ ଝୁଆଇପାରୁ ନାହିଁ ।

କାରଣ ଟିମାର ମାନସମ୍ମାନ ବଢିଯାଇଛି । ସେ ଥିଲା ଗାଁର ଗୋଟିଏ ନଗଣ୍ୟ ଲୋକ—ଯାହାକୁ ସମସ୍ତେ କୁହନ୍ତି ସାଧୁ ଲୋକ ।

ସେ ଯାହା ମିଳିଲା ସେଥିକରେ ସନ୍ତୋଷ ହୋଇ ଖାଏ । ଜଳର ପରିସରରେ ଚଳେ । ଏବେ ସହରକୁ ଆସି ସେ ଖୋଜୁଛି ଆଳୁ ଟମାଟୋ ଓ ରୁଟି ପରଟା । ପାଣି ଭଲ ଲାଗୁ ନାହିଁ—ସେ ଖୋଜୁଛି ଚା' ।

ମୋଟ ଉପରେ ସେ ସାଧୁରୁ ଗ୍ରସକେଲ୍ ପାଲଟି ଯାଇଛି । ଲୋକ ମନ୍ତ୍ରୀ ହେଲା ପରେ ଯେମିତି ଡବଲ୍ ଡେବଲ ପ୍ରମୋସନ ପାଇ ଗ୍ରସକେଲ୍ ବନିଯାଏ ।

ସେ ଖୋଜେ ମଦ—ମାଇକିନିଆ—ଟଙ୍କା—କ୍ଷମତା । ସେସବୁ ସଂଗ୍ରହ କରି ନିଜକୁ ସେ ଉଚ୍ଚ ଜାଗାରେ ବସାଇବ । ମାର ଗୁଲି ସେ ମିଶ୍ରି ସରବତ୍ ବା ବାସି-ପାଣିକୁ । ଆଣୁ ଦୋଳା ଧୂଳିକୁ କଦାପି ଛୁଅ । ସେ ତ ଆଗ ପରି ସେମିତି ସମସ୍ତଙ୍କର ଗରିବ ନୁହେଁ ।

ଓଲଟି ତାହାର ଗରିବ ହେଉଛନ୍ତି ସେଇସବୁ ଲୋକ । ସେମାନେ ଗ୍ରସକେଲ୍-ଙ୍କ ଭେଟି ଭଲଗୁଣ ପାଞ୍ଚ ଦଶ ଯୋଗାଡ଼ କରିପାରୁ ନାହାନ୍ତି ।

କେମିତି ଭଲା ମଣିଷ ଜାଣୁ ଜାଣୁ ଗ୍ରସକେଲ୍‌ମାନଙ୍କୁ ଭଲ କହିବ ? ଓଲାଙ୍କୁ ବୁଢ଼ିଆ କହିବ ? ପାଣିପିଅ, ପାନଖିଆଙ୍କୁ ନେଇ ମଦପିଆ, ସିଗାରେଟ୍‌ଖିଆଙ୍କ ସାଙ୍ଗରେ ସମାନ କରି ବସାଇବ ?

ଲୋକେ ତ କହିବେ—ଇଏ ହେଉଛି ବିଗ୍ରହିନତା । ପାଜିକୁ ଉତ୍ତମ ସ୍ଥାନ ଦିଆଯାଇ ନ ପାରେ ।

http://oaob.nitrkl.ac.in

ତେବେ ସ୍ୱପକେଲ୍ କ'ଣ ଏଇ ସଂସାରରେ କିଛି ଭଲ ସୁପାରଶ୍ ପାଇପାରିବ ନାହିଁ ? ସଂସାରର ଯେତେ ପଦପଦବୀ ରହିଛି ସବୁଠାରେ ଗୁଡ଼ିଏ ସାଧୁମହନ୍ତ ବସି ଯାଇଛନ୍ତି । ଓଡ଼ିଶାର ସାଧୁମହନ୍ତ ଆଜି ବହୁତ ହୋଇଗଲେଣି—ଜଣେ ବି ପାଜି ସେଥି ଭିତରେ ରହୁ ନାହିଁ ।

ବଡ଼ ମଣିଷ କ'ଣ କେବେ ପାଜି ହୋଇପାରେ ? ···ନା, ନା, ଅସମ୍ଭବ ।

କୁକୁର ସ୍ୱପକେଲ୍ଟି ହେଉଛି ଆଧୁନିକ ଯୁଗର ଗୋଟିଏ ପତାକା । ଧନ ମହଲା ଶୀତତାପ ନିୟନ୍ତ୍ରିତ ହୋଟେଲ, ସିନେମା ଓ ଜୁଆ ଆଡ୍ଡା ପରି ସ୍ୱପକେଲ୍ ହେଉଛି ଗୋଟାଏ—ସେ ଜୋର କରି ଆପଣାର ଦାବୀ ଜଣାଇ ସବୁ ସୁବିଧା ଅସୁଲ କରିନେଇଯାଉଛି ।

ସ୍ୱପକେଲ୍ ଜନ୍ମ ହେବାର ମାତ୍ର ଛଅମାସରେ ଟିମା ଉପରକୁ ଚାଲିଯାଇଛି । ମାଲିକ ଉପରକୁ ଉଠିଯାଇଛି—ମାଲିକର ଖୋରାକ ସ୍ୱପକେଲ୍ର ଖୋରାକ ଅପେକ୍ଷା ବେଶି ଦାମ୍ର ।

କାରଣ ସ୍ୱପକେଲ୍ ଆଭିଜାତ୍ୟ ଦେଖାଇପାରୁଛି । ବେଶ୍ୟା ସପ୍ତ ପାଳିଟି ସମସ୍ତଙ୍କ ହୃଦୟରେ ଆସ୍ଥାନ ଜମାଇଲା ପରି ସ୍ୱପକେଲ୍ ବି ସମସ୍ତଙ୍କ ଉପରେ ରହିଛି । ଗୁଳୁଣ୍ଡା ଗଛ ବରଗଛକୁ ଟପି ଉଚ୍ଚା ଓ ମୋଟା ହେଲାପରି ।

ସ୍ୱପକେଲ୍ର ଭାଇଭଉଣୀ ସ୍ୱପକେଲ୍କୁ ଡରି ଚଳନ୍ତି । ସ୍କୁଲରେ ସହପାଠୀ ମୃକଶ କଲାବେଳେ ତାହାର ବଡ଼ କୁକୁର ଡରି ଅଣ ରହିଲା ପରି ।

ସିଏ ହାକିମ ତାହାର ଦାନ୍ତ ଅଛି । ବିରକ୍ତ ହେଲେ ହାକିମର ଦନ୍ତାଘାତ ଯୋଗ ସୃଷ୍ଟି କରିବ । ବୁଝାଯିବ ଯେ ସ୍ୱପକେଲ୍ ପ୍ରତିଶୋଧ ନେଇପାରେ ।

ତେଣୁ ବାବୁଙ୍କ ବିନା କାରଣରେ ହଜୁର—ଖୋଦାବନ୍ଦ—ମାଲିକ ଆଦି ସମ୍ବୋଧନ ଚଳାଇଲା ପରି ସ୍ୱପକେଲ୍କୁ ମଧ୍ୟ ଜପିବାକୁ ପଡ଼େ । ଯେଉଁଦିନ ସ୍ୱପକେଲ୍ ମାଲିକ କଥା ନ ଶୁଣିବ ସେଇଦିନ ମାଲିକର ଦାମ୍ ଦ'କଡ଼ାର ହୋଇଯିବ । ଏଣେ ସ୍ୱପକେଲ୍ ହୋଇଯିବ ଜଣେ ସ୍ୱାଧୀନଚେତା ।

ପ୍ରତିପଦରେ ଏମିତି ଷୋଳ—ଅଠର—କୋଡ଼ିଏ—ବାଇଶି ହେଲାବେଳକୁ ନିଜକୁ ସାଧୁମହନ୍ତ ଆଖ୍ୟା ଦେଇ ପୃଥିବୀରେ ସ୍ୱାଧୀନଚେତା ହୋଇଯାଉଛନ୍ତି । ସେତିକି ବେଳକୁ ହୃଦୟହାରିଣୀ ବାଳାମଣି ମଧ୍ୟ ତାହାର ଅତୀତ ଜୀବନର ଅସଂଖ୍ୟ ସନ୍ତାପର ମାଳା ଆଣି ପିନ୍ଧାଇ କହୁଛି—ତାହାର ଜୀବନ ବ୍ୟର୍ଥ ହେଉଛି ।

http://oaob.nitrkl.ac.in

ପ୍ରତ୍ୟେକ କହୁଛନ୍ତି ଯେ ସେମାନେ ଦୈବ ଦୁର୍ବିପାକରୁ ସାଧୁଟିଏ ସାଙ୍ଗ ହିସାବରେ ନ ପାଇ ସ୍ୱାଇକେଲ୍ ସାଙ୍ଗରେ ଘର କରି ରହିଗଲେ । ମାଣ୍ଟିଗରେ ମଣିମ ଗୋଟର, କଙ୍କଡ଼ା ବସ୍ତୁ ସାଙ୍ଗରେ ସଙ୍ଗାତ ମଇତ୍ର ସାଜି ରହିଗଲା ପରି ।

ସବୁ ପ୍ରକାରର ଜୀଅନ୍ତା ଓ ମଲା, ନିର୍ଜୀବା ଓ ସ୍ୱୃଲୁ ସ୍ୱାଇକେଲ୍ଙ୍କର ଅନେକ ସଦ୍‌ଗୁଣ ରହିଛୁ । ଖୋଜି ଲୋଡ଼ି ପ୍ରତ୍ୟେକେ ସ୍ୱାଇକେଲ୍‌ର ଭଲ ଭଲ ଗୁଣର ତାଲିକା କରି ରଖିଲେ ନିଜେ ତ ବାଧରେ ସାଧୁ ବନିବ । ଏଣେ ସ୍ୱାଇକେଲ୍‌ମାନଙ୍କର ଦେବତା ଅଂଶ ଜାରି ହୋଇଯିବ । ତାଙ୍କର ସାଧୁରୂପ ବିଶ୍ୱମଣ୍ଡଳରେ ପ୍ରସ୍ଫୁରିତ ହେବ ।

ସେଇଠୁ କଥା ହେଲା ଯେ ସ୍ୱାଇକେଲ୍‌ର ଗୋଟାଏ ଫଟୋ ରହିବ । ଯେ ଏତେ ଆନନ୍ଦ ଦେଉଛୁ—ତାହାର ଫଟୋ ନ ରଖିଲେ ନ ଚଳେ ।

—ଗୋଟାଏ ଫଟୋ ନେବାକୁ କେତେ ଲାଗିବ ?

—ପଚିଶ ଟଙ୍କା । ଏଠି ଆମର ଷ୍ଟୁଡ଼ିଓରେ ନେଲେ କିଛି କମ ଲାଗିବ ।

—ଏଠି ହୋଇପାରିବ ନାହିଁ । ଘରେ ଭଲ ହେବ । ଆମ ଘରର ଫଟୋ ଦରକାର ।

—କ'ଣ ସୁବିଧା ହେଥିରେ ? ଆମର ଅଙ୍କା ସିନ୍ ରହିଛି । ଯେମିତି ଚାହିଁବେ ସେମିତି ଭଲ ଘର ଦିଆ ଯାଇପାରିବ ।

—ଗୋଟାଏ ଅସୁବିଧା ରହିଛି । ଆମର କୁକୁରର ଫଟୋ ଦରକାର ।

—ଓଃ, ହେଲା ହେଲା । ଏଠି କୁକୁରକୁ ନ ଆଣି ଆଉ ଗୋଟିଏ ଛବିକୁ ଲଗାଇ-ଦେଲେ ଚଳିବ କି ?

ଏଇ ଫଟୋବାଲାର ହୃଦସ୍ଥ ନାହିଁ । ଆମର ସ୍ୱାଇକେଲ୍ ରହିବ ନାହିଁ । ବଦଳରେ ଗୋଟାଏ କୁଆଡ଼ୁ କୁକୁର ରହିବ । ସିଏ ପୁଣି ଜୀଅନ୍ତା କୁକୁର ନୁହେଁ—କୁକୁରର ଚିତ୍ର ।

—କ'ଣ କହୁଛନ୍ତି ? ଆସିବେ ଏଠିକି ନା ଆମେ ଯିବୁ ଆପଣଙ୍କର ଘରକୁ ?

—ଆପଣ ଆସନ୍ତୁ, ଆମେ କୁକୁରଟିକୁ ଖରି ଗୁଜା କରୁ ।

—କି କୁକୁର ?

—ଜାଡ଼ିଆ କୁକୁରଟାଏ ।

ଫଟୋଗ୍ରାଫର କହିଲା—ସାର୍, ଦେଖନ୍ତୁ ଅମର କାମେରାର ମହିମା । ଏଇ କାଚ ଭିତରେ କେତେଜଣ ଚନ୍ଦ୍ରତାରକା ଆଣି ରଖିଛୁ । ସେମାନେ ଠିକ ଏମିତି ଦିଶୁ

ନ ଥିରେ । ଘରର ତାରକା ଚନ୍ଦ୍ରର ତାରକା ହେଲାବେଳେ ଅନେକ ବଦଳିଯାଏ । ଆମେ ଭୁଲରେ ଅନେକ ଯୋଗ ବିଯୋଗ କରିଦେଇପାରୁ ।

ସତରେ ଏଇ ଫଟୋ ଦୋକାନୀମାନେ ମାରାତ୍ମକ ରାସକେଲ୍—ମଣିଷକୁ ବଦଳାଇ ଦେଇପାରୁଛନ୍ତି । ତାଙ୍କର ଯନ୍ତ୍ରବଳରେ । ମିଛକୁ ସତ ବୋଲି ଭେଳିକ କରୁଛନ୍ତି ଏଇ ଫଟୋବାଲା, ଏଇ କଚେରୀବାଲା ଓ ଶାସନ କଲାବାଲା ।

ବିଲେଇ ପରି ଆଖି ବୁଜି ବସି ଯାଉଛନ୍ତି—ଆମେ ଯାହା ପଚାରିଲେ କହୁଛନ୍ତି ଯେ ଦେଖି ନାହାନ୍ତି, ଆଉ ଜାଣି ନାହାନ୍ତି । ସତରେ ସେମାନେ ରାସକେଲ୍ ।

ଠିକ କଳ ଓ ଲୋକଙ୍କ ପରି ଠିକ୍‌କୁ ବେଠିକ୍ କରିବାରେ ବଡ଼ ଧୂରନ୍ଧର । କେତେ ପାଜି ସତରେ !

ସତ କ'ଣ ବୁଡ଼ିଗଲା ଏଇ ସଂସାରରୁ ? ଆମେ ସମସ୍ତେ ଯାହାକୁ ସତ ଭାବୁଛୁ ସେଇଟା କଣ'ଣ ଆମେ ରାସକେଲ୍ ହୋଇଥିବାରୁ ନା ସାଧୁମହାତ୍ମା ହୋଇଥିବାରୁ । ରାସକେଲ୍ ଯାହା ବୁଝୁଛି ସିଏ କ'ଣ ସତ ନୁହେଁ ।

ରାସକେଲ୍—ରାସକେଲ୍ ।

ସେ ଆଖି ଖୋଲିଲା । ପୁଣି ଆଖି ବୁଜିଦେଲା ।

—କ'ଣରେ ରାସକେଲ୍ ? ଆଜି ତୋର ଫଟୋ ଉଠିବ । ଭଲ କରି ଫୂର୍ତ୍ତି ହୋଇ ଫଟୋ ଉଠାଇବୁ ।

ରାସକେଲ୍ ବେଶୀ ଆଗ୍ରହ ଦେଖାଇଲା ନାହିଁ । ତାହାର ଫଟୋ ଉଠିବ । ଆଉ ସେ ନିର୍ବିକାର । ତେବେ ସେ କ'ଣ ରାସକେଲ୍ ନୁହଁ—ଗୋଟାଏ ସାଧୁ ହେବ ?

ତଥାପି ରାସକେଲ୍ ଗୃହିଲା ନାହିଁ । କିଏ ଜାଣେ ସେ କ'ଣ ଭାବୁଛି । ସାଧୁ କଣ ଜାଣେ କି ସେ ଜଣେ ସାଧୁ । ଲୋକେ ବାରମ୍ବାର କହିଲେ ସେ ମନେରଖେ ଯେ ସେ ଜଣେ ସାଧୁ । ରାସକେଲ୍ କାଲେ ସେମିତି ହୋଇଥିବ । ତାକୁ ଅ.ଉଁଚିବାରୁ ହାତକୁ ଉଷୁମ ଲାଗିଲା···ଆରେ ଆମ ରାସକେଲ ଦେହ ଭଲ ନାହିଁ । ତାକୁ ଜର ହୋଇଛି ।

—ଏଁ, ଜର ? କେମିତି ଜର ହେଲା ? ସେ ସକାଳେ ବୁଲାବୁଲି କରୁଥିଲା । ଆମେ ଫଟୋବାଲାକୁ କହିଦେଇ ଆସିଲୁ । ସେ ଆସିଯିବ ଉପରଓଳିକୁ । ରାସକେଲ୍ ଧିଅ ଖରାପ ହେଲାଣି ।

—କ'ଣ କରାଯିବ ? ଫଟୋଗ୍ରାଫର ଆସି ତାହାର କଳ ଦେଇ ବସିବ । ଏବେ ରାସକେଲ୍‌ର ଦେହ ଖରାପ । ତାହର କ'ଣ ବେମାରିଆ ଫଟୋ ରଖା ହେବ ?

http://oaob.nitrkl.ac.in

—ନା, ସେମିତି ହୋଇପାରିବ ନାହିଁ ।

—ଯାଇ ଫଟୋବାଲାକୁ ମନା କରିଦେବା ।

—ହେ, ସେ ବିରକ୍ତ ହେବ ଯେ । ଗୋଟାଏ କୁକୁର ପାଇଁ ତାହାର ଅର୍ଡ଼ର କଟିବ । ···ସେ କହୁଥିଲା ଯେ ତାହା ପାଖରେ କୁକୁର ଛବି ଅଛି । ଛବିକୁ ରଖି ସାହେବମାନେ ବନ୍ଧୁକ ଧରି ଶିକାରୀ ବେଶରେ ଫଟୋ ଉଠାଇ ରଖିଛନ୍ତି ଘରେ ।

—ସେ କୁକୁର କ'ଣ ରାସକେଲ୍ ପରି ?

—ନା, ତା' ହବ କେମିତି ? ଅମ ପୁଅ କ'ଣ ଅନ୍ୟର ପିଲାପରି ? ପ୍ରତ୍ୟେକ ମଣିଷ ପ୍ରତ୍ୟେକ ମଣିଷଠାରୁ ଅଲଗା । ପ୍ରତ୍ୟେକ କୁକୁର ଅନ୍ୟ କୁକୁରଠାରୁ ଅଲଗା ।

—ତେବେ ଆମେ ଫଟୋ ଉଠାଇବା ନାହିଁ । ରାସକେଲ୍‌ର ତୁଳନା ସେଇ ନିଜେ । ପ୍ରତ୍ୟେକର ତୁଳନା ସେଇ ଲୋକ । ରାସକେଲ୍‌ର ତୁଳନା ପ୍ରତ୍ୟେକ ରାସକେଲ୍ ହେବେ ନାହିଁ । ସେ ଆମର ରାସକେଲ୍ ।

ଯାହା ଆମର ସେଇ ଭଲ, ସେଇ ଧାର୍ମିକା, ସେଇ ଚିରସ୍ଥାୟୀ ।

ଏହାକୁ ଯିଏ ବିରୋଧ କରେ ସେ ପ୍ରକୃତରେ ରାସକେଲ୍ । ରାସକେଲ୍‌କୁ ଯିଏ ଖରାପ କହିବ ସେଇ ହେଉଛି ରାସକେଲ୍ । ରାସକେଲ୍‌ର ଖରାପ ଗୁଣ ହେଉଛି ପ୍ରକୃତରେ ଭଲ ଗୁଣ । ଯିଏ ତାକୁ ଖରାପ କହେ ସେଇ ଖରାପ ।

ଆମର ସ୍ତ୍ରୀ, ବାପା, ପୁଅ, ବୋହୂ ସବୁହେଁ ଭଲ । ଯେତେ ଲୋକ ଆମର— ଯିଏ ଭଲ ହେବାକୁ ବାଧ୍ୟ । ଏପରିକି ଆମର ରାସକେଲ୍ ସବୁଠାରୁ ଭଲ । ଆମର ସବୁ ଦୋଷ ହେଉଛି ଅପୂର୍ବ ଗୁଣ ।

ରାସକେଲ୍‌ର ଜର ବଢ଼ିଲା । ସେ ଦୁଧପିଇଲା ନାହିଁ । ବିସ୍କୁଟ ଖାଇଲା ନାହିଁ । ଡାକିଲେ ଶୁଣିଲା ନାହିଁ । ହଠାତ୍ ହଠାତ୍ ବେଶି ହୋଇଯାଉଛି ।

କାଲିଠୁଁ ସେ ଆଗ ଦିନ ରାତିରେ ଯାଇ ଗାଡ଼ିଆରୁ ପଙ୍କ ଖାଇଛି ।

—ପଙ୍କ ଖାଇଲେ କ'ଣ କାହାର ଦେହ ଖରାପ ହୁଏ ? ବୋଧହୁଏ ତାହା ପେଟରେ କୃମି ହୋଇଯାଇଛନ୍ତି । ନ ହେଲେ ତାହାର ପେଟରୁ ବିଷ ପୂରା ହଟି ନାହିଁ ।

—ନା, ନା । ସେ ଏମିତି ହ' ହ' ଅରବେମାରରେ ପଡ଼ି ଆପଣାଛାଏଁ ଖାଡ଼ବୂଡ଼ ହୋଇ ଉଠିଲାଣି । ଗୋଟାଏ କ'ଣ ରୋଗ ତାହାର ଅଛି ।

http://oaob.nitrkl.ac.in

—କେଜାଣି କିଏ କହିବ ସେ କଥା ।

ବାଧରେ ଫଟୋବାଲା ପାଖକୁ ଯାଇ ମ୍ୟସକେଲ୍‌ର ଦେହ ଖରାପ ଥିବା କଥା ଜଣାଇବାକୁ ପଡ଼ିଲା ।

କୁକୁରଟାଏ—ଦେହ ଖରାପ ହେଲା ବୋଲି ଫଟୋ ଉଠିବା ବନ୍ଦ କ'ଣ କରିହୁଏ ?

ଆମେ ସେଇ କୁକୁର ପାଇଁ ଆମର ଫଟୋ ଉଠାଉଥିଲୁ । ତାକୁ ଆମେ ଖୁବ୍ ଆଦର କରୁ ବୋଲି ତାହାରି ସାଙ୍ଗରେ ଆମର ଫଟୋ ଉଠିଥାନ୍ତା ।

—ସେ ଭଲ ହୋଇଯାଇଥିବ ଖରା ଲେଉଟିଲା ବେଳକୁ । ପଶୁ ଜନ୍ତୁ ଏବେ ଶ୍ରେଣୀ—ଆଉ ପହରକୁ ସେମାନେ କୁଦା ମାରି ଶିକାରକୁ ଗଲେଣି ।

—ଆମ କୁକୁରର ସ୍ୱା'କୁ ମିଶାଇ ଛଅଥର ଦେହ ଖରାପ ହେଲାଣି । ସେ ଉପର-ଓଳିକୁ ଭଲ ହେବା ସମ୍ଭବ ନୁହେଁ ।

—କ'ଣ ହେଉଛି ତା'ର ?

—କେଜାଣି ? ଖାଉ ନାହିଁ । ଆମକୁ ଚିହ୍ନୁ ନାହିଁ । ଆଖି ବନ୍ଦ କରି ରହୁଛି ।

କହିବା ଲୋକର କଣ୍ଠସ୍ୱର ଥରି ଉଠିଲା । ଭଲପାଇବା ଏମିତି ସୂକ୍ଷ୍ମ ଜିନିଷ । ଯାଉ ସଂସାର ପଛକେ ଉଜୁଡ଼ି ଯାଉ, ମୋର ଶ୍ରେଷ୍ଠ ପରିବାରଟି ନିରାପଦ ହେଉ ।

—କ'ଣ କରାଯିବ କହନ୍ତୁ !

—ଦେଖି ଆମେ ଆସି ଖବର କରିବୁ । ସେ ଟିକିଏ ଚେଙ୍ଗା ହୋଇଗଲେ ଆମେ ଫଟୋ ଉଠାଇବୁ । ତାହାର ଫଟୋଟିଏ ରହିବା ଦରକାର ।

—କି କୁକୁର ସେଇଟା ?

—ଭଲ କୁକୁର । ଖରାପ କୁକୁରକୁ ଆମେ ଭଲ ପାଇ ପାଳିଲେ ସେଇ ଭଲ କୁକୁର ହୋଇଗଲା ତ ।

—ଠିକ୍ କଥା କହିଲେ ଖରାପକୁ ସୁପାରିଶ୍ କଲେ ସେ ଭଲ ହୋଇଯାଏ । ଏମିତି ଅନେକ ଅନାଡ଼ି ଲେଖକ, ଅନାଡ଼ି ଓକିଲ ଓ ଅଦରକାରୀ ପଦାର୍ଥ ଅତି ମୂଲ୍ୟବାନ ହୋଇଯାନ୍ତି । ଆମର ବନାନ ଭୁଲ, ସ୍କୁଲରେ ପ୍ରମାଦ, ବହିଛପାରେ ଭୁଲ, ସ୍ତ୍ରୀ ପିଲାଙ୍କର କଦର୍ଯ୍ୟ ବ୍ୟବହାର ଆମର ବହୁମୂଲ୍ୟ ସମ୍ପତ୍ତି ହୋଇଯାଏ ।

—ଏଇ କାରଣରୁ କଣ୍ଟକ ସୁନ୍ଦର । ଆମର ଗାଁ ଗଡ଼ିଆର ମାଙ୍କଡ଼ିଆ କଇଁଫୁଲ ସୁନ୍ଦର । ଆମର ପାକେଇ ବୁଢ଼ା ବୁଢ଼ୀ ସୁନ୍ଦର । ସମସ୍ତେ ସୁନ୍ଦର—ଖାଲି ଜଣେ ସମଜଦାର ପାଇଲେ ।

http://oaob.nitrkl.ac.in

—ସମଝଦାର ପାଇଲେ ଡାଗୀ ଦାଗ ସୁନ୍ଦର । ଟିକଲ ହାକିମ ସୁନ୍ଦର । ଚୁଣ୍ଡା ଚଟି ଓ ମୁରୁଗୁଣିଆ କଣ୍ଢା ସୁନ୍ଦର । ଆମର ସାଇକେଲ୍ ସୁନ୍ଦର ।

ଘରକୁ ଫେରିଲାବେଳେ ସାଇକେଲ୍ ଥରକୁ ଥର ମନେପଡ଼ୁଥିଲା । ଏଇ ମନେ ପଡ଼ିବା ହେଉଛି ଅପରର ମୂଲ୍ୟ । ଏହି ମନେପଡ଼ିବା ହେଉଛି ପ୍ରୀତି—ସ୍ନେହ—ମମତା ।

ଏଇ ମମତାର ପ୍ରତିଦାନ ହେଉଛି କୃତଜ୍ଞତା । ଯେଉଁ ଫଟୋରେ ସାଇକେଲ୍ ନ ରହିବ ସେ ଫଟୋ ଆମର ଦରକାର ନାହିଁ । ଆମ କୋଡ଼ରେ ସାଇକେଲ୍ ବସି ଫଟୋ ଉଠାଇଲେ ଆମେ ସିନା ନିଜକୁ ମନେ ରଖିବା ।

ବାପାମାଙ୍କ ସାଙ୍ଗରେ ଫଟୋ ଉଠାଇ ରଖିବା ହେଲା ପୁରୁଣା କାଳିଆ କାମ । ମୁଖ୍ୟମନ୍ତ୍ରୀ, ପ୍ରଧାନମନ୍ତ୍ରୀ କିସମର ଜଣେ ଅଧେ ନାୟକଙ୍କ ପାଦ ପାଖରେ ବସି ବା ପଛଆଡ଼େ ଠିଆ ହୋଇ ଫଟୋ ଉଠାଇ ରଖିଲେ ପରିବାରଟା ଧନ୍ୟ ହେବ !

ସାଇକେଲ୍ ଆମ କୋଳରେ ବସିଲା ପରି ଆମେ ତାଙ୍କରି ପାଖରେ ରହିବା ହେଲା ପରମ ସୌଭାଗ୍ୟ ।

ସାଇକେଲ୍ ସେମିତି ଶୋଇ ରହିଥାଏ ଆମର ପୁରୁଣା ବହିଖାତା ପରି । ସେ ଭଳି ଦରକାରୀ କିନ୍ତୁ କାମର ନୁହଁ । ଏତେ ଉତ୍ସାହ ସେ ଭାଙ୍ଗିଦେଲା ଦେହଟାକୁ ଖରାପ କରି ।

କାମନାର ଜୁଆର ଆସିଲାବେଳେ ଶେଯସଙ୍ଗିନୀ ନିଜର ଅସୁସ୍ଥତା କହିଲେ ତାକୁ ମଣିଷ ସହାନୁଭୂତି ଦେଖାଇବ ନା ଶାସ୍ତି ଦେବ ? ଆମେ ଯେତେବେଳେ ରାସ୍ତା ରୋକେ କି ବଜାର ବନ୍ଦ କରିବାକୁ ଯାଉଛୁ । ସେତେବେଳେ ଯିଏ ଆମର ଉତ୍ସାହର ପ୍ରତିଧ୍ୱନି ନ ଶୁଣାଇଲା ତାକୁ ଆମେ ଉଚିତ୍ ଶିକ୍ଷା ଦେବାକୁ ତାହାର ଦୋକାନ ଭାଙ୍ଗିଦେଉ ।

ସାଇକେଲ୍ ଅତ୍ୟନ୍ତ ଚୁପ୍‌ଚାପ୍ ରହିଲା ବୋଲି ମାଡ଼ ଗାଳି ଖାଇଲା ନାହିଁ । ତାହାର ଦୋଷ ନାହିଁ । ତାକୁ ଯିଏ ନ ଜଗିଲା ସେଇ ଦୋଷ ସେଇ ଜଗିଲାବାଲାର ।

ବୋହୂ ହାଣ୍ଡି ବୁଲିବାକୁ ଯାଇ ଅପରର ଖଟ ଉପରେ ବସିଲେ ଦୋଷ ବୋହୂର ନୁହେଁ ଶାଶୁର । ପିଲା ପଢ଼ା ନ କହି ନ ପାରିଲେ ଦୋଷ ମାଷ୍ଟରଙ୍କର—ଶିକ୍ଷା ବିଭାଗର ନୁହେଁ । ଅପରେସନ୍‌ରେ ରୋଗୀ ମଲେ ଦୋଷ ହୁଏ ନିଶା ଦେବା ଲୋକର ଅବା କଳଙ୍କିଲଗା ହତିଆରର ଅବା ବିଜୁଳିର ଖେଳାଟେକର ନ ହେଲେ ଭାଗ୍ୟର ।

http://oaob.nitrkl.ac.in

ଗ୍ରେସକେଲ୍ ସେମିତି ନିର୍ଦ୍ଦୋଷ ହୋଇ ରହିଗଲା—ତାହାର ପୋଷଣାହାରୀଙ୍କର ସ୍ନେହ ଆଦରର ପଣତ ତଳେ । ଏଇ ସ୍ନେହ ଆଦରର ପ୍ରଣତ ହେଉଛି ମାଆର ପଣତ ।

ଏଇ ପଣତରେ ସ୍ତ୍ରୀ ଡାକେ ସ୍ୱାମୀକୁ । ମନ୍ତ୍ରୀ ଡାକନ୍ତି ସେକ୍ରେଟାରୀଙ୍କୁ । ଏମିତି ସମସ୍ତେ ଡାକନ୍ତି ଉପରୁ ତଳ ଆଡ଼କୁ । ସବୁଠାରେ ଏଇ ମା'ର ପଣତ କାନି । ତାହାରି ତଳେ ରହିଛି ଆମର କୁକୁର ଛୁଆ ଗ୍ରେସକେଲ୍ ।

ଭାରତର ପ୍ରଧାନମନ୍ତ୍ରୀଙ୍କର ପଣତ ତଳେ ଲୁଚି ଯାନ୍ତି ରାଜ୍ୟର ମୁଖ୍ୟମନ୍ତ୍ରୀ—ସବୁ ଦୋଷ ମାଫ୍ । ଏଣେ ମୁଖ୍ୟମନ୍ତ୍ରୀ ଚାଲନ୍ତି ତାଙ୍କର ଖେଳ କୌତୁକ ଦେଖାଇବାରେ । ଦୋଷ ମଫ୍ ହେବା ହେଉଛି ମାଆର ଦୟା । ଏଇଟା ହେଲା ଆମର ଭାଗ୍ୟର ଉଦୟ ସମୟ ।

ନିଜର ବଳଠାରୁ ବଡ଼ର ଓ ଅପରର ଦୟା ଅଧିକ ଦରକାରୀ । ଖାଲି ଦୟା ମିଳିଲେ ଜଣେ ଜନ୍ମରୁ ମରଣଯାଏ ନିଷ୍କଣ୍ଟକ ଗାର୍ଦ୍ଧିଗାରବର ହୋଇ ରହିଯାଇପାରିବ । ଏମିତି ରହିଛନ୍ତି ଅନେକ ବଡ ଲୋକ ଜୀବନର ସବୁକ୍ଷେତ୍ରରେ ।

ଏହି ଦୟାରୁ ବାହାରିଛି କୃତଜ୍ଞତା—ଯାହା ଗ୍ରେସକେଲ୍ ପରି କୁକୁରଙ୍କର ଲାଙ୍ଗୁଡ଼ ହଲା ଏହି କୃତଜ୍ଞତାରୁ ବାହାରିଛି ଭକ୍ତି ବୋଲି ଗୋଟିଏ ମାର୍ଗ—ଯେଉଁ ମାର୍ଗରେ ପଥିକର ଦୋଷାଦୋଷ ବିଚାର ହୁଏ ନାହିଁ ।

ଜ୍ଞାନ ମାର୍ଗରେ ଟକାଟକି ରହିଛି । କର୍ମ ମାର୍ଗରେ ସମୀକ୍ଷା ଅଛି । ଭକ୍ତି ମାର୍ଗରେ କିଛି ନାହିଁ—ସେଠି ପାଜି ସାଧୁ ହୋଇଯାଏ । ଗ୍ରେସକେଲ୍ ପରି କୁକୁର ତାହାର ମାଲିକଠାରୁ ଉପରକୁ ଚାଲିଯାଏ ।

ଭକ୍ତିମାର୍ଗରେ ନ ଚାଲିଲେ ଚାଲିଲା ଲୋକକୁ କୃତଘ୍ନ କୁହାଯାଏ । ସମସ୍ତେ ସମସ୍ତଙ୍କୁ କୁହନ୍ତି କୃତଘ୍ନ । କାରଣ ଲୋକେ ସବୁଦିନେ ଭକ୍ତିମାର୍ଗରେ ଚାଲିବାକୁ ଅକ୍ଷମ—ନିଜର ପରିବାରରେ, ଚାକିରିରେ, ବ୍ୟବସାୟରେ ଓ ରାଜନୀତିରେ ।

ଏମିତି ଆମେ ସମସ୍ତେ ଭକ୍ତିମାର୍ଗରେ ଚାଲୁ ଚାଲୁ ଭକ୍ତିମାର୍ଗକୁ ସମୀକ୍ଷା କରିବାକୁ ଜ୍ଞାନର ପ୍ରୟୋଗ କରି କିଛି ଜ୍ଞାନ ମାର୍ଗରେ ଓ କିଛିଟା କର୍ମମାର୍ଗରେ ଚାଲୁଁ । ତେଣୁ ସଂସାରରେ ଗୋଟିଏ ବାଟର ବାଟୋଇ ମିଳନ୍ତି ନାହିଁ ।

ପଶୁ ବା ପଶୁ ପ୍ରକୃତିର ମଣିଷଙ୍କର ବହୁତ ସୁବିଧା ଓ ଲାଭ । ସେମାନେ କେବଳ ଭକ୍ତି ମାର୍ଗକୁ ଧରି ସିଢ଼ିର ଉପରଯାଏ ଚାଲିଯାନ୍ତି । ସେଇଠୁ ଯେତେବେଳେ ସେମାନେ ହଗାମୁତା ଆରମ୍ଭ କରନ୍ତି ତଳେ ବିପ୍ଳବ ଆରମ୍ଭ ହୁଏ । ସେ ବିପ୍ଳବ ଆରମ୍ଭ ହୁଏ ନେତାଙ୍କ ଉପରେ—ଭକ୍ତମାନଙ୍କ ଉପରେ ନୁହେଁ ।

http://oaob.nitrkl.ac.in

ଖଲାସ ହୋଇଯାନ୍ତି ସବୁ ପ୍ରକାରର ଆଶ୍ରିତ—ଆଶ୍ରା ପାଇ, ଗୃହରେ ରହି ସ୍ୱାସ୍ଥ୍ୟର ଯତ୍ନ ନେଇ ସ୍ୱାସ୍ଥ୍ୟକୁ ପୋଷି ଯାଇ ବୋଦାର ମାଇନ କରିଥିବା ଲୋକ। ମାତ୍ର ଖାଇଯାନ୍ତି ସରଦାର।

କିନ୍ତୁ ଭଗବାନ ଏଇ ଗ୍ରେସକେଲ୍ କୁକୁର ପରି ଏତେ ବିଚକ୍ଷଣ ଯେ ଯେପରି ହେଉ ବେଢ଼ିଯାନ୍ତି। ପ୍ରତ୍ୟେକେ ବୁଝାଇଦିଅନ୍ତି ଯେ ସେମାନଙ୍କର ଭକ୍ତି ଅନ୍ୟର ଭକ୍ତିଠାରୁ ସରସ।

କିଏ ସରଦାରକୁ ସ୍ୱାମୀରୂପରେ, ସ୍ତ୍ରୀ ରୂପରେ ଓ ସର୍ବଶକ୍ତିମାନ୍ ରୂପରେ କେତେ ପ୍ରକାରରେ ପୂଜା କରିଛି ତାହାର ତାଲିକା ଫର୍ଦ୍ଦ ଦେଖି ନିଜେ ଭଗବାନ ମଧ୍ୟ ବାରମ୍ବାର ଠକି ଯାଇଛନ୍ତି।

ଗ୍ରେସକେଲ୍ ତାହାର ମାଲିକକୁ ଠକି ଦେଇପାରୁଛି—ଏଥିରେ ଅଡ଼ୁଆ କିଛି ନାହିଁ।

ପିଣ୍ଡାରେ ଅଖା ଖଣ୍ଡିକରେ ଶୋଇ ସେ ରୋଗୀ ହୋଇଛି। ତାହାର ନାକ ପାଖରେ ସରାରେ ବିସ୍କୁଟ, ଆଉ ଗୋଟିଏ ସରାରେ ଦୁଧ ଥୁଆ ହେଉଛି। ଗ୍ରେସକେଲ୍ ଚାହୁଁ ନାହିଁ ସେ ସବୁ ଜିନିଷ ଆଡ଼କୁ।

କିଏ ଗ୍ରେସକେଲ୍‌କୁ ଆଉଁଷି ବସିଲେ ସେ ମଧ୍ୟ ବିରକ୍ତ ହେଉଛି। ଆଉଁଷିବା ଯେ ସେବାର ଏକମାତ୍ର ଅଙ୍ଗ ନୁହେଁ ଏତକ ଗ୍ରେସକେଲ୍ ବୁଝାଇ ଦେଉଥିଲା ତାହାର କାମରେ। ସେ କାହାରିକୁ ଖୋଜୁ ନାହିଁ—ସେ ଏକୁଟିଆ ରହିବାକୁ ଚାହେଁ।

ଜଣେ କହିଲା—କାନ୍ଥରେ ଲେଖିଦିଅ ଯେ କୁକୁର ଦେହ ଭଲ ନାହିଁ। ତାକୁ ବିରକ୍ତ କରିବା ଉଚିତ୍ ନୁହେଁ।

ତେବେ ପଢ଼ିବ କିଏ? ଯିଏ ଲେଖିଲା ସେ ଜାଣିଛି। ଯେ ଆସି ପହଞ୍ଚିବ ତାହାର ଏଇ ରୋଗୀ କୁକୁର ବିଷୟରେ ଚିନ୍ତା କରିବାର କାରଣ ନାହିଁ।

ମଣିଷ ରୋଗୀମାନେ ଭଲ। ତାଙ୍କୁ ଗୋଟାଏ ବଖରା ଡାକ୍ତରଖାନାରେ ମିଳିଗଲା ପରେ ସେମାନେ ଆଗ ଲେଖି ଦେଖଣାହାରିଙ୍କୁ ସତର୍କ କରିଦିଅନ୍ତି। କାରଣ ରୋଗୀଟିଏ ମିଳିଗଲେ ମଣିଷ ବଡ଼ ଉତ୍ସାହୀ ହୋଇଥାଏ ତାହାକୁ ଭଲ କରିବାକୁ।

କିନ୍ତୁ କୁକୁରମାନେ ଗ୍ରେସକେଲ୍‌ଠାରୁ ପ୍ରାୟ ଦୂରରେ ରହନ୍ତି, କେବଳ ରାତି ଛଡ଼ା ସେତେବେଳେ ଗ୍ରେଟ ଗ୍ରେଟ କୁକୁର ଛୁଆ ଆସି ପାଖ ଛୁଇଁ ଶୋଇପଡ଼ନ୍ତି।

ସନ୍ଧ୍ୟାବେଳକୁ ଗ୍ରେସକେଲ୍‌ର ଦେହ ସେମିତି ସମାନ ରହିଲା—ମଣିଷର ଅନେଶ୍ୱତରୁ ଗହେ ଜର ପରି। ଫଟୋ ଉଠିବା ବନ୍ଦ ହେଲା। ବିଜୁଳି ଆଲୁଅ କଟି-ଯିବାରୁ ତାସ ଖେଳ, ଚେସ୍ ଖେଳ ବନ୍ଦ ହୋଇଗଲାପରି।

http://oaob.nitrkl.ac.in

କୁକୁରକୁ ଗୁହିଁ ଗୁହିଁ ଥକଡ ଲାଗିଲା । ଜଣେ ଜଣେ ଉଠି ଚାଲିଗଲେ । ରୋଗୀର ସେବା ଯତ୍ନ କରିବା ଏଇ ସଂସାରରେ କେବେ ହେଲେ ମନରୁଚ୍ୟ କାମର ତାଲିକାରେ ଯାଇ ନାହିଁ ।

କାରଣ ସେବାରେ ଯେଉଁ ଟିକକ ହୃଦୟର ସହଯୋଗ ଲୋଡ଼ା ହୁଏ ସେତକ ରଖିବା ଭାରି କଷ୍ଟକର । ମଣିଷର ହୃଦୟ ଭାରି ଝୁଙ୍କାବୁଲା । ଏକା ବିଷୟରେ ସେ ସ୍ଥିର ରହିପାରେ ନାହିଁ ।

ଖାଲି ମଣିଷ କାହିଁକି ପ୍ରତ୍ୟେକ ଜୀଅନ୍ତା ପ୍ରାଣୀର ହୃଦୟ ଓ ମନ ଏମିତି ଚଞ୍ଚଳ । ଚପଳ ଓ ଝୁଙ୍କାବୁଲା । ରାସକେଲ୍ କ'ଣ ମାଲିକକୁ ଶହେଥର ଗୁହିଁ-ପାରିବ ? ମାଲିକ କ'ଣ ତାହାର ପିଲାକବିଲାଙ୍କୁ ଶହେଥର ଚୁମା ଦେଇପାରିବ ? ପ୍ରାଣର ପ୍ରତିମା କ'ଣ ଶହେଥର ହସିପାରିବ ।

ସେଥିପାଇଁ ରାସକେଲ୍‌ମାନେ ଦେଖାଇ ଦେଇଛନ୍ତି ଯେ ସଂସାରଟା ହେଉଛି ନୀରୋଗ, ସୁସ୍ଥ ଓ ଜୀଅନ୍ତା ଲୋକଙ୍କ ପାଇଁ । ଯେଉଁମାନଙ୍କର ଦେହରେ ରକ୍ତ ଚଞ୍ଚଳ ନୁହେଁ । ମନ ଭିତରେ ସ୍ପନ୍ଦନ କମ୍ ସେମାନେ ସଂସାରର ବାଟରୁ ଆଡ଼େଇ ହୋଇଯାନ୍ତି ।

ଆଉ ମନକୁ ଭୁଲାଇବାକୁ ଟିକିଏ ନିଶା କରନ୍ତି ନିଶା ହୋଇଗଲେ ସେ ତାହାର ସ୍ୱୟଂ ସମ୍ପୂର୍ଣ୍ଣ ହୋଇ ନିଜର ଅକ୍ଷରେ ବୁଲିବାକୁ ଆରମ୍ଭ କରେ ।

ନିଶାର ଏଇ ଚମତ୍କାର ଗୁଣଟି ଥିବାରୁ ସବୁ ଯୁଗରେ ନିଶା ଏତେ ଲୋକପ୍ରିୟ ହୋଇଛି । ଅନ୍ୟକୁ ଭୁଲିବାକୁ ଓ ନିଜକୁ ଭୁଲି ଯିବାକୁ ନିଶା ଅତ୍ୟନ୍ତ ଦରକାର ।

ରାସକେଲ୍‌କୁ ନିଶା ଖୁଆଇଦେଲେ ସେ ବୋଧହୁଏ ଚେଙ୍ଗା ହୋଇଯାନ୍ତା । ସେ ଭୁଲିଯାନ୍ତା ତାହାର ଦେହକୁ ଓ ପୁଣି ହୋଇଯାନ୍ତା ଚାଲବୁଲ କରୁଥିବା କୁକୁରଟିଏ ।

—କ'ଣ ଦିଆଯିବ ?—ଆଫିମ, ଗଞ୍ଜେଇ, ମଦ ନା ଆଉ କିଛି ?

—ହେ, ଜନ୍ତୁ କ'ଣ ନିଶା ଖାନ୍ତି ?

—ନେଉଳ ଖାଏ । ବାଜ ଖାଏ । ସମୟ ହେଲେ ଆସି ଘରେ ପହଞ୍ଚନ୍ତି । ମଣିଷ ନିଶା ଖାଏ ଘରୁ ବାହାରିଯିବା ପାଇଁ । ଅଜାଣତରେ ନିଶା ଖାଇଲେ ସେ ନେଉଳ ପରି । ଜାଣି ବୁଝି ନିଶା ଖାଇଲେ ସେ ହୋଇଯାଏ ଅଲଗା ମଣିଷ—ତାହାର ଘର ନାହିଁ, ସଂସାର ନାହିଁ, ଅଛି କେବଳ ତାହାର ପରି ସମାନଧର୍ମୀ । ଲୋକ—ଯେଉଁମାନେ ନିଜକୁ ଭୁଲିବାକୁ ଏଇ ବାଟର ବାଟୋଇ । କିନ୍ତୁ ଜନ୍ତୁ ରାଜ୍ୟରେ ନିଶା ଆଣି ଦବ କିଏ ?

http://oaob.nitrkl.ac.in

ଡାକ୍ତରଖାନାରୁ ଅଧ କପେ ବ୍ରାଣ୍ଡି ଅଣା ହେଲା । କୁକୁରମାନେ କାମୁଡ଼ା-କାମୁଡ଼ି ହୋଇ ଗୁରୁତର ଆଘାତ ପାଇଲେ ବ୍ରାଣ୍ଡି ଦିଆଯାଏ । ଗୋଟିଏ ଗାଈ ବ୍ରାଣ୍ଡି ଖାଇ ଟାଣ ହେଇଥିଲା । ଗ୍ରେସକେଲ୍ ତାହାହେଲେ କାହିଁକି ଚଞ୍ଚଳ ନ ହେବ ?

ନେସତା ଏଇ ସଂସାରରେ ପ୍ରିୟ ନୁହେଁ । ତେବେ ଗ୍ରେସକେଲ୍‌କୁ ଅଧିକା ନିଶା ହେଇଗଲେ ସେ କାଳେ କାମୁଡ଼ି ଗୋଡ଼ାଇବ ଅବା କିଛି ପ୍ରକାରର ଗୋଳମାଳ କରିବ ।

ତୁଳାରେ ବ୍ରାଣ୍ଡି ଭିଜାଇ ଗ୍ରେସକେଲ୍‌ର ନାକ ଓ ପାଟିରେ ମସି ହେଲା । ଗ୍ରେସକେଲ୍ ମୁହଁକୁ ଘୁଞ୍ଚାଇ ନେଲା ।

ସତରେ ଗ୍ରେସକେଲ୍ ହେଉଛି ଆଦର୍ଶ କୁକୁର—ଏଇ ଗ୍ରେସକେଲ୍ । ସେ ମଦ ଛୁଉଁ ନାହିଁ । ଗ୍ରୀକମାନେ ବାଜିରେ ସୁବିଧା ହେଇଗଲେ ସମସ୍ତେ ଚାଲୁଛନ୍ତି ମଦ ବୋତଲ ଆଡ଼କୁ । ମଦ ନ ଖାଇଲେ ଗ୍ରୀକମାନେ ଗୋଳମାଳ ହେଇଯିବ । କରିଲା କାମ ଭୁଲ୍ ହେଇଯିବ । ଯିଏ ବଡ ଗ୍ରୀକମାନେ କରି ମଦ ଖାଇ ଜାଣିଲା ନାହିଁ ସେ ଜୀବନର ଅନେକ ସୁଆଦ ହରେଇଛି ।

ଗ୍ରେସକେଲ୍‌ର ମାଲିକ ମଦ ଛାଡ଼ି ଦେଇଥିଲା କାରଣ ମଦରୁ କୃତ୍ରିମ ଉତ୍ତେଜନା ଅଣାଇବା ସମସ୍ତଙ୍କୁ ଭଲ ଲାଗେ ନାହିଁ । ମଦ ଖାଇ ପରମାତ୍ମା ଖୋଜିବା ଭୁଲ । ମଦ ଖାଇ ବୁର୍ଜି ଆମଦାନି କରିବା ଭୁଲ । ମଦ ଖାଇ ମଦର ଉତ୍ତେଜନାରେ କିଛି ଗୋଟାଏ କାମ କରିବା ଭୁଲ୍ ।

ଗ୍ରେସକେଲ୍ କଥା ପ୍ରଚ୍ଛର ହୋଇଗଲା—ନୋଭି ଓ ଲାଇଟ୍ ପାଖରେ ।

—ଆପଣଙ୍କ କୁକୁର କ'ଣ ମଦ ଖାଇପାରିବ ?

—କେଜାଣି ଆମେ ତ କେବେ ଦେଇ ନାହୁଁ ।

ଥରେ ଦେଇ ଦେଖିଲେ ସେ କେମିତି କେତେ ଦୂର ତେଜ ହେଉଛି ?

—କାଳେ କିଛି ଖରାପ ହେବ ।

—ଖରାପ ? ମୋତେ ନୁହେଁ ।

—ମଦ କ'ଣ କୁକୁର ଖାଏ ?

—କୁକୁର ସବୁ ଖାଏ । ମଣିଷ ଯାହା ଖାଏ କୁକୁର ସେ ସବୁ ଖାଏ । ମଣିଷ ଯେମିତି ମଦ ଖାଇ ତାହାର ଖିଆଲ ବଳରେ ମାତି ଚାଲିଯାଏ କୁକୁର ସେମିତି ଟିକିଏ ତାହାର ଡର ଭୟ ହରେଇଲେ କିଏ ଜାଣେ ବାଘ ସାପଙ୍କୁ ମାରିଦବ ।

http://oaob.nitrkl.ac.in

ନୋଭ୍ସି ଓ ଲାଇଟ୍ ଆସି ଲାଙ୍ଗୁଡ ହଲାଇ ଠିଆ ହେଲେଣି । କପ୍‌ରୁ ମଦ ବାସନା ଅଳ୍ପ ଅଳ୍ପ ବାହାରୁଛି । କ'ଣ କହୁଛନ୍ତି— ମଦ ଟିକିଏ ଦିଅ । ଔଷଧ ପରି ପାନେ ।

ମଣିଷର କୌତୂହଳ ହେଲା ବଡ କଥା । ନୋଭ୍ସି ଓ ଲାଇଟ୍ ମଦ ଖାଇବେ । ବିଲାତି କୁକୁର ମଦ ନ ଖାଇଲେ ବିଲାତି ହୋଇପାରିବ ନାହିଁ ।

ଶେଷରେ ମଣିଷକୁ ମଣିଷଠାରୁ ବାରିଦେବାକୁ ଦରକାର ହୁଏ ଅସଂଖ୍ୟ ଦୋଷ—ମଦ ଖାଇବା ଦୋଷ ବୋଲି ଧରାଯାଏ ସମାଜ ସଂସ୍କାରକଙ୍କ ଆଖିରେ ।

ସମାଜ ସଂସ୍କାରକମାନେ ଅଳ୍ପ ବୁଦ୍ଧିର ଲୋକ । ସ୍ତ୍ରୀ ଲୋକମାନେ ଅଧା ଲଙ୍ଗଳା ହୋଇ ବୁଲିଲେ ଭଲ । ଘରେ ଲୁଚେଇ ମଦ ଖାଇଲେ ଭଲ । କିନ୍ତୁ ବାହାରେ ମଦ ଖାଇଲେ ନିନ୍ଦା କରାଯିବା କଥା ।

ଡୁଲାରେ ବ୍ରାଣ୍ଡି ଭିଜାଇ ଲାଇଟ୍ ମୁହଁ ପାଖରେ ରଖା ହେଲା । ଲାଇଟ୍ ଗ୍ରହଣ କଲା । ସେମିତି ନୋଭ୍ସି ବି ଗ୍ରହଣ କଲା ।

ତାଙ୍କର ପୂର୍ବପୁରୁଷମାନେ ବୋଧହୁଏ ମଦ ଖାଉଥିଲେ । ଏଇ କୁକୁରମାନେ ଖାଇଲେ । ରାସକେଲ୍ ଖାଇଲା ନାହିଁ । ବୁଝାପଡୁଛି ଯେ ରାସକେଲ୍‌ର ପୂର୍ବପୁରୁଷ ଥିଲେ ପଖାଳଖିଆ ପ୍ରାଣୀ । ମୂର୍ଖ ଘରେ ଯେମିତି ପଣ୍ଡିତ ବାହାରେ ନାହିଁ ସେମିତି ପେଜଖିଆ ଘରେ ମଦତି ବାହାରିବା ସମ୍ଭବ ନୁହେଁ ।

ନୋଭ୍ସି ଓ ଲାଇଟ୍ ନିଶା ଖାଇ କିଛି ଅବଗୁଣ ଦେଖାଇଲେ ନାହିଁ । ଆରେ ଏଗୁଡାକ ନର୍ଥ୍ ବଡ ଅମଲୀ । ମଦର କିଛି କରାମତି ନାହିଁ ଏମାନଙ୍କ ଉପରେ । ହେଲେ ତାଙ୍କର ଚରିତ୍ର ଖରାପ ।

ତୁଳନାରେ ରାସକେଲ୍ ଖୁବ୍ ଭଲ ମଫସଲିଆ ହୋଇଥାଉ ପଛକେ ଚରିତ୍ର ଭଲ ଥିଲେ ସେ ହବ ଆଦର୍ଶ ।

ଗରିବ ସେଥିପାଇଁ ଆଦର୍ଶ ହେଉଛି । ଗରିବର ଜୀବନକୁ ଭାଷା ଦେବାକୁ ସିନେମା, ଲେଖକ ଆଉ ଚିତ୍ରକର ଗୁଳିଛନ୍ତି । ନିଜେ ମଦ ନିଶାକୁ ହଜମକରି ମଦର ଅପକାରିତା ବୁଝାଇ ଚରିତ୍ରର ଭଲଗୁଣ ଦେଖାଇ ପାରୁଛନ୍ତି ।

ରାସକେଲ୍ ଶୋଇଛି । ଶୋଇଥାଉ—ଆମେ ଅନ୍ୟ କାମରେ ଯିବା । ଦୁ'ଗୁରି ଘଣ୍ଟା ଶୋଇପଡିଲେ ରାସକେଲ୍ ପୁଣି ଭଲ ହୋଇଯିବ ।

ଖରାବେଳେ ରାସକେଲ୍ ଉଠିଆସିଲା ଘର ଭିତରକୁ । ବେଶେଇ ଘର ଏରୁଣ୍ଡି ବନ୍ଧ ପାଖ ଅଟା ଉପରେ ଶୋଇ ରହିଛି ।

ଆରେ—ରାସକେଲ୍ ଆସିଲାଣି ! ବଡ ଅମାନିଆ କୁକୁରଟା । ଘର ଭିତରକୁ ଆସିବାକୁ ଯେତେ ମନା କଲେ ବି ଜୋର ଜବରଦସ୍ତି କରିବ ।

http://oaob.nitrkl.ac.in

ଦେହ ଖରାପ ଅଛୁ । ବଡବା ଶୋଇଥାଉ । ଗେଷେଇ ଘର ଏବୁଣ୍ଡି ବନ୍ଧ ଉପରେ ମୁଣ୍ଡ ଦେଇଛୁ । ତାହାର ଭାଇଭଉଣୀମାନେ ପଦାରେ—ତାଙ୍କର ସାହସ ନାହିଁ ଭିତରକୁ ଆସିବାକୁ ।

ରାସକେଲ୍—ରାସକେଲ୍ ' ସେ ମୁଣ୍ଡ ଟେକିଲା ।

—ଖାଇବୁ ?

—ସେ ତାର ଓଠକୁ ଗୁଡିଦେଲା ।

—ଦେଖ, ଜୁଙ୍କିପାରୁଛୁ । ଖାଇବା କଥା ୯୦ ଗୁଡିଲିଣି । କୁଣିଆକୁ ବାଟରେ ଦେଖି ଆମ୍ଭି କୁଆ ଆସି ଘର ପିଡାରେ ବସି ବୋବାଇଲା ପରି ।

ରାସକେଲ୍ ବିସ୍କୁଟ ଖାଇଲା ଦୁଧ ପିଇଲା । ତାହାର ଯତ୍ନ ନିଆଯିବା ଦରକାର ।

ଡାକ୍ତରଖାନା ଖଟିଆପରି କିଛି ଗୋଟାଏ ସୁବିଧା ଉପାୟ ମିଳୁଥିଲେ କୁକୁର-ମାନଙ୍କର ଭଲ ହେଉଥାନ୍ତା । ସେ ଯଦି ସରକାରୀ କୁକୁର ହୋଇଥାନ୍ତା ତେବେ ସେ କେତେ ସୁବିଧାରେ ନ ଥାନ୍ତେ '

ସରକାରୀ ନୌକରର ଦେହ ଖରାପ ହେଲେ ସେ ବମ୍ବେଇ ଭେଲ୍ଲୋର ଚକର କାଟି ସରକାରଙ୍କ ତହବିଲରୁ କଏ ଷାଠିଏ ହଜାର ଲକ୍ଷେ ମାରନେଇ ଖବର-କାଗଜରେ ପୁଣି ରୋଗୀ ସହାୟକ ଫଣ୍ଡ ଖୋଲି ଦେଉଛନ୍ତି ।

ନୌକରର ଦେହ ଖରାପ ହେବା ରାଷ୍ଟ୍ରର ବିପଦ । କିନ୍ତୁ ଲୋକ ପ୍ରତିନିଧି ବା କଳାକାର ଶୁଖି ଶୁଖି ମରିବା କାହାରି ବିପଦ ନୁହେଁ ।

ରାସକେଲ୍ ଭୁଲେଇ ଭୁଲେଇ ଦେଖାଉଥାଏ ସରକାରୀ କୁକୁରମାନେ କେମିତି ଜଣେ ଜଣର ଖାଜାଞ୍ଚି ହେଇ ରାଜକୋଷକୁ ଲୁଟି ନେଉଛନ୍ତି । ଏଇ ସାରା ଫସାରଟା ହେଲା ନୌକରଙ୍କର, ଆଉ ସେଥିଭିତରେ ଯେଉଁମାନେ ଭାରି ଚତୁର ସେମାନଙ୍କର ।

ଓଡିଶା ରାଜକୋଷରୁ ବର୍ଷକୁ ଦୁଇକୋଟି ଟଙ୍କା ଯାଏ ନୌକରମାନଙ୍କର ସେହି ଆଦର୍ଶ ଯାନ, ଶରୀର, ଚିକିତ୍ସା ଓ ଗର୍ଭନର ସେବାରେ । କୁକୁର ସମାଜ ଏତେ ବଳବାନ୍ ଯେ ସେଠି କିଛି ନିୟମ ଚାଲେ ନାହିଁ ।

ଶହ ହଜାର ଦରିଦ୍ର ଲୋକ ପ୍ରତିଦିନ ଗାଲିଛନ୍ତି ମଶାଣି ଆଡେ ଅଳ୍ପ କିଛି ଔଷଧ ପଥ୍ୟ ପାଇ ନ ପାରି । ଏଣେ ବୃତ୍ତିଭୋଗୀ ନୌକର ସାହାଙ୍କର ପରିଚର୍ଯ୍ୟାରେ ଧନ ଉଜୁଡ଼ିଯାଉଛି ।

http://oaob.nitrkl.ac.in

ଗ୍ରିସକେଲ୍‌ଟା ହତଭାଗା । ସେ ସରକାରୀ କୁକୁର ହୋଇପାରି ନାହିଁ । ବିଚାରି ଗୋଟାଏ ଅପଦାର୍ଥ ଘରେ ଆସି ପଡ଼ିଛି । ତାହାର ଚିକିତ୍ସା କରାଇବ କିଏ ?

ଗ୍ରିସକେଲ୍‌ର ଚିକିତ୍ସା ହେଲା ତାହାର ମାଲିକର ସ୍ନେହ ଓ ସହାନୁଭୂତି । ମାଲିକର ଈଶ୍ୱରଙ୍କଠାରେ ପ୍ରାର୍ଥନା—ଗ୍ରିସକେଲ୍‌କୁ ଭଲ କରିଦେବାକୁ ।

ଈଶ୍ୱର ହେଲେ ଗୋଟାଏ କଚେରୀ ମିସଲ । ସମସ୍ତେ ତାଙ୍କର ଅର୍ଜି ପେସ୍‌କରି ଆସି ଅନାଉଥିବେ । ନଥିଗୁଡ଼ାକ ସେମିତି ପଡ଼ି ରହିଥିବେ । ଈଶ୍ୱରଙ୍କର ଅନେକ କାମ—ସେ କେତେ ଅବା ଏଇ ସବୁ ବାଜେ ଅର୍ଜି ନେଇ ମୁଣ୍ଡ ଖେଳାଇବେ ?

ଯାହାର କେହି ନାହିଁ—ତାହାର ପାଇଁ ଈଶ୍ୱର । ଯାହାର କେହି ଅଛି—ସେ ଖୁଲେ ସେଇ ଲୋକକୁ ଧରି ସବୁ ସୁବିଧା କରିନେବା ପାଇଁ । ବଡ଼ବଡ଼ିଆ ଯେତେ ସୁବିଧା ଅତି ସହଜରେ ଆଣି ଭୋଜବାଜି ପରି ଠୁଳେଇ ଦେଇଯାନ୍ତି ସେତିକ କଜେ ଈଶ୍ୱର କରିବାକୁ ଅକ୍ଷମ ।

ଆମର ସଂସାରରେ ବଡ଼ବଡ଼ିଆମାନେ ଈଶ୍ୱରଙ୍କଠାରୁ ବଡ଼ । ଖାଲି ପ୍ରବଳ ଲୋକ ଗୁଣ୍ଡାଙ୍କୁ ଡରି ଚଳିଲା ପରି ସେମାନେ ମଝିରେ ମଝିରେ ଈଶ୍ୱରଙ୍କୁ ସ୍ତବ କରି ଜଣାଇ ଦିଅନ୍ତି ଯେ ପ୍ରଭୁଙ୍କର ଦୟାରେ ତାଙ୍କର ସବୁ ହୋଇଛି ।

କିନ୍ତୁ ମନରେ ଥାଏ ପ୍ରଭୁ କିଛି କରି ନାହାନ୍ତି । ସେ ତାହାର, ବୁଦ୍ଧି, ବଳ, କୌଶଳ ମିଶାଇ ସବୁ ଯୋଗାଡ଼ କରିଛି । ଏଇ ମଣିଷ ସମାଜରେ ଯେ ଈଶ୍ୱରଙ୍କପରି ଗୋଟାଏ ଅନୁଷ୍ଠାନ ଏତେ ଯୁଗ ଧରି ରହିପାରିଛି—ଏତିକ ହେଉଛି ଆଶ୍ଚର୍ଯ୍ୟ ।

ଶହେ ପାଞ୍ଚପାରେ ଚାକିରୀ ଆରମ୍ଭକରି ପଚିଶି ତିରିଶି ବର୍ଷରେ ଦେଢ ଦୁଇ ହଜାର ପାର ଚାକିରୀରୁ ଗଲାବେଳେ ଲକ୍ଷେଟଙ୍କା ଓ ପେନସନ୍ ପୁଣି ପରିବାର ପାଇଁ ଆଉ ଦୁଇ ଲକ୍ଷ ଟଙ୍କା ନିୟମ ପ୍ରକାରରେ ମିଳିପାରୁଛି । ଏଥିରେ ଈଶ୍ୱରଙ୍କର କମର କଷ୍ଟ କଲେ ଦେଖାଯିବ ଯେ ଈଶ୍ୱର ହେଉଛନ୍ତି ସବୁଠାରୁ ଅଧିକ ପକ୍ଷପାତି ।

ଏଣେ ଦେଶରେ ବିପ୍ଳବ ହୋଇପାରୁ ନାହିଁ । ଦିନର ଆଲୁଅରେ ଖଜଣାଖାନା ଲୁଟି ହେଉଛି । ପେନସନ୍ ଶ୍ରେଣୀ ବାବୁମାନେ ସକାଳୁ ସନ୍ଧ୍ୟା ଯାଏ କ'ଣ ଖାଇବେ, କ'ଣ ପିଇବେ ସେଇ ତାଲିକା କରିବାରେ ବ୍ୟସ୍ତ । ସେତେବେଳେ ଈଶ୍ୱରଙ୍କର ନାମ ଗନ୍ଧ ନାହିଁ ।

ଈଶ୍ୱର ରହିଛନ୍ତି କେବଳ ଦରିଦ୍ର ଶ୍ରେକଳା ଲୋକଙ୍କ ପାଇଁ । ସେ ଅଳ୍ପ ସଳ୍ପ ପାଇଗଲେ ବସିଯାଇ ଗୋଡ଼ ଧୋଇ ଈଶ୍ୱରଙ୍କୁ ଧନ୍ୟବାଦ ଦେବ ।

ଅନ୍ୟାୟ ଓ ଅନୀତିର ରକ୍ତମୁଖା ହିଂସ୍ର ସମାଜରେ ଈଶ୍ୱର ହେଉଛନ୍ତି । ଅନ୍ୟାୟ ଓ ଅନୀତିର ପ୍ରତୀକ । ତାଙ୍କୁ ପୂଜା କରିବା ଭୁଲ୍ । ଯେଉଁ ସମାଜରେ ନ୍ୟାୟ ରହିଯାଇଛି କୁକୁରଙ୍କ ସପକ୍ଷରେ ସେଠି କୁକୁରମାନେ ଈଶ୍ୱର ପୂଜା କରିବା ଉଚିତ୍ ।

http://oaob.nitrkl.ac.in

ଈଶ୍ୱର ଯେତେବେଳେ ଏତେ ଦୂର ଅସମର୍ଥ ତାଙ୍କର ଜମିଜମା, ସୁନା, ରୁପା, ମୁକୁଟ ଗୃହ ହେଲେ ଭୁଲ୍ କାହିଁକି ହବ ?

ସତ ଯେ ଈଶ୍ୱର ବାହାରବେ ଖମ୍ବଭିତରୁ, ଉଇହୁଙ୍କା ଭିତରୁ—ନ୍ୟାୟ ଦେବେ । ପାପୀକୁ ଧ୍ୱଂସ କରିବେ । କିନ୍ତୁ ଈଶ୍ୱରଙ୍କ ଏଇ କାମ ହେଉଛି ବୁଦ୍ଧି-ହୀନତାର ଛପାଫର୍ଦ୍ଦ ।

ତଥାପି ଅନେକ ଲୋକ ତାଙ୍କର ଅତୁଟ ଭକ୍ତିରେ ଈଶ୍ୱରଙ୍କର ମହିମାକୁ ବଞ୍ଚାଇ ରଖିଛନ୍ତି । କିଏ କରିଥିବା ସଙ୍ଗୀତସମିତିରେ ଶ୍ରୀ ଖଣ୍ଡକ୍ଷୀରୋଦ ମିଶ୍ର ଜଗନ୍ନାଥଙ୍କର ଭଜନ ଯେପରି ଭାବରେ ଆପଣା ଭୁଲି ପରିବେଶରେ ବୋଲି ପାରୁଛନ୍ତି ସେଥିରେ ଯେ କୌଣସି ନାସ୍ତିକ ମଧ୍ୟ ବାଟ ପାଇବ ।

ଗ୍ରସକେଲ୍‌ର ଶ୍ରେଷ୍ଠ ଜୀବନର ଇତିହାସ ଅସୀମ ଅଗାଧ ଈଶ୍ୱରଙ୍କର ମହିମାର ଅଂଶ । ସେ ତାକୁ ପଠେଇ ଦେଇଥିଲେ ସେଇ ପରିବାରକୁ ତାଙ୍କର ମହିମାକୁ ଜଣାଇଦେବା ପାଇଁ ।

ଈଶ୍ୱରଙ୍କ ଦୃଷ୍ଟିରେ ପାହାଡ଼ ଓ ମାଟିଗଦା ସମାନ । ଘାସ ଓ ଦ୍ରୁମ ସମାନ । ଅନ୍ୟାୟର ମନ୍ଦିର ଓ ନ୍ୟାୟର ଶ୍ରେଷ୍ଠ ବେଦୀ ସମାନ । କୁକୁର ଓ ମଣିଷ ସମାନ । ଏଇ ସମାନ ଭାବ ଦେଖାଇବା ପାଇଁ ସଂସାର ଗୋଟାକଯାକ ଲାଭକ୍ଷତି, ଜନ୍ମମରଣ, ଅନ୍ୟାୟ ଓ ନ୍ୟାୟକୁ ଆଣି ଥୋଇଛନ୍ତି ।

ଗୋଟିଏ ଶ୍ରେଷ୍ଠ କୁକୁର ଛୁଆ ଏତେ କଥା କଣ ଦେଖାଇପାରେ ? ଏତେ ସ୍ପଷ୍ଟ ଭାବରେ କ'ଣ ବୁଝାଇପାରେ ? ଗ୍ରସକେଲ୍ ସେମିତି ଶୋଇ ରହିଥାଏ ସେଫେଲ ଘର ଦୁଆର ପାଖରେ । ଯେ ଭିତର ବାହାର ହୁଏ ସାବଧାନରେ ଯିବା ଆସିବା କରେ ଗ୍ରସକେଲ୍‌ର ଅସୁବିଧା ନ କରିବା ପାଇଁ ।

କେଉଁଠି ମଣିଷ ତାହାର କାନୁନ୍‌ର ରୁକ୍ଷତା ଦେଖାଇବାକୁ ମାଡ଼ ଚଢ଼ାଏ । ପୁଣି କେଉଁଠି ସେ କାନୁନ୍‌ର କୋମଳତା ଦେଖାଇବାକୁ ଦୟା, କରୁଣା ଓ ବିଗ୍ଭରରେ କାମ କରେ ।

ସନ୍ଧ୍ୟା ହୋଇ ସକାଳ ହେଲା ଗ୍ରସକେଲ ସେଇଠି ଶୋଇ ରହିଲା । ଯେ ଯେତେ ତାକୁ ବାହାରକୁ ଯିବା ପାଇଁ ବିବାଦ କଲେ, ହୁକୁମ ଗଲେ ଗ୍ରସକେଲ୍ ଶୁଣିଲା ନାହିଁ । ତାହାର ଆଉ ଇଚ୍ଛା ନ ଥିଲା କାହାରି କଥା ଶୁଣିବାକୁ ।

ଦେହ ଖରାପ ହେଲେ ଏମିତି ବିଗ୍ଭର କରିବାର କ୍ଷମତା କ ମଣିଷ କ ପଶୁ ସମସ୍ତଙ୍କର ଲୋପ ପାଏ ।

http://oaob.nitrkl.ac.in

ଗ୍ରେଟ କୁକୁରଟିଏ ଗୃହକର୍ତ୍ତେ ଲମ୍ବା ଚଉଡ଼ା ଜାଗା ମାଗୁଛି ତାହାର ମାଲିକକୁ । ସେ ବା ଏତେ ଜାଗା କ'ଣ କରିବେ ? ତଥାପି ଆପତ୍ତି ଯେ କୁକୁରଟା ଅଳିଆ । ସେ ଅସୁନ୍ଦର ।

ଗ୍ରେଗ୍ରେଇ ଘର କବାଟରେ ରଖାହୋଇଥାଏ ପ୍ଲାଷ୍ଟିକର ପ୍ରଜାପତି, ଫୁଲ ଆଉ କିଛିପକି । ମଣିଷର ମତ ହେଲା ଯେ ଜୀଅନ୍ତା ପଦାର୍ଥ ସବୁ ଅଳିଆର କାରଣ । ତେଣୁ ସେ ଗୋଟେ ସଂସାରର ମଣିଷ ଏତିକ ଜଣାଇବାକୁ ସେ ପ୍ଲାଷ୍ଟିକର ନିର୍ଜୀବ ପଦାର୍ଥ ଆଣି ରଖିଥାଏ ।

ଘରେ ରହିଛି ପ୍ଲାଷ୍ଟିକ ଫୁଲ । ସ୍ତ୍ରୀର ମୁଣ୍ଡରେ ପ୍ଲାଷ୍ଟିକ ରବର୍‌ର ଫୁଲ । ଗୃହଆଡେ ରହିଛି ନକଲି କାମ ।

ଜୀବନର ମୂଲ୍ୟ ଏ ନକଲି ଉପରେ ଠିଆ ହେଲାଣି । ସନ୍ଧ୍ୟାବେଳେ ଖାଇବାକୁ ନାହିଁ—କିନ୍ତୁ ସିନେମା ଦେଖିବା ଦରକାର । ଗୀତ ବୋଲିବାର ଉତ୍ସାହ ନାହିଁ—କିନ୍ତୁ ଶୁଣିବା ପାଇଁ ରେଡ଼ିଓ, କାସେଟ୍ ଦରକାର । ପ୍ରୀତି ପାଇଁ ଉତ୍ସାହ ନାହିଁ—ମଦ ଖାଇବା ଦରକାର । ନିଦ ପଡୁ ନାହିଁ— ନିଦ ବଟିକା ଖାଇବା ଦରକାର । ପିଲା ପଢୁ ନାହିଁ—ମାଷ୍ଟର ଦରକାର ।

ଏଥିରୁ ଦେଶର ବୁଝିଲା ଲୋକ ନିୟମ କରିଦେଲେଣି—ପ୍ରତିଦିନ ନିଦ ବଟିକା ଖାଇ ଶୋଇଲେ ଅବଶ୍ୟ ଦେହ ଭଲ ହେବ । ସିନେମା ଦେଖିଲେ ମନଟା ସତେଜ ହେବ—ବିପ୍ଳବ କରିବାକୁ ଇଚ୍ଛା ଆସିବ । ଅନେକ ନୂଆ ଚିନ୍ତାଧାରା ମିଳିବ । କାମ ନକରି, ଖଟଣିକୁ ଅବଜ୍ଞାଦର କରି କେମିତି ଜୀବନର ସବୁକଥା ପାଇ ହେବ ।

ଅସମ୍ଭବ ନୁହେଁ । ଅନେକ ଲୋକ ସବୁ ପାଇଯାଉଛନ୍ତି । କୌଣସି ପ୍ରକାରରେ ଜଣେ ଧନବାନର ଆଶ୍ରିତ ଓ ପାଳିତ ହୋଇ ଗ୍ରେଗ୍‌କେଲ୍ ପରି ରହିଗଲେ ସବୁ ସୁବିଧା ହୋଇପାରିବ ।

ସଂସାରର ବାରଅଣା ଲୋକ ଏଇ କୁକୁର ପରି ଖାଲି ପୋଷା ମାନି ନିଜର ଦର ସଂସାର ଚଳାଇ ମୋଟା ସୋଟା ହେଉଛନ୍ତି ।

ଗ୍ରେଗ୍‌କେଲ୍‌ର ମା ଆସେ ଥରକୁ ଥର ସେଇ ଘର ପାଖକୁ । ଗ୍ରେଗ୍‌କେଲ୍‌ର ମା ହେଲା ନାର୍ଣ୍ଣି ।

ନାର୍ଣ୍ଣି ଭିତରକୁ ପଶିବା ମନା । ନାର୍ଣ୍ଣି ହୋଇଛି ଅଛବ—କାରଣ ସେ ତାହାର ଜନ୍ମରୁ ଏଇ ଘରେ ପୋଷା ହୋଇ ନାହିଁ ।

ନାର୍ଣ୍ଣି ଜନ୍ମ ହୋଇ କଟକ ସହରକୁ ଆସିଥିଲା ପାଞ୍ଚବର୍ଷ ତଳେ । ସେଇଦିନୁ ପଡ଼ା ଉଠା ହୋଇ ସେ ବଞ୍ଚି ରହିଛି । ନିଜର ବୁଦ୍ଧିରେ ବଞ୍ଚିଛି କି ଈଶ୍ୱରଙ୍କର ଦୟାରୁ ବଞ୍ଚିଛି ସେଇ ତତ୍ତ୍ୱ ଠିକ୍ ବୁଝି ପଡୁ ନାହିଁ ।

http://oaob.nitrkl.ac.in

ନାଣିର ଭଉଣୀଟିଏ ଥିଲା । ସେ' ଭଉଣୀ ପାଖ ଗାଁ'ର ଦୋକାନରେ ସକାଳୁ ସଞ୍ଜଯାଏ ବସି ଥାଆନ୍ତି । ଗରାଖର, ଦୟା ଉପରେ ତାହାର ଜୀବନ । ମେଘର ଦୟା ଉପରେ ଚାତକ ଚଢେଇର ଜୀବନ ।

ସହରରେ କୁକୁରମାନଙ୍କ ଅଭିଯାନ ପ୍ରତି ବର୍ଷ ଦୁଇଥର ହୁଏ । ଥରକେ କୁକୁରୀ ଛ' ସାତ ପିଲା ଜନ୍ମ କରେ । ସେଥିରୁ ଅଧେ ଯାଏ ଲୋପ ପାଇଯାନ୍ତି ମାସକ ଭିତରେ ।

କାରଣ କୁକୁର ମାଆକୁ କେହି ଟନିକ୍ ଦିଏ ନାହିଁ । ପୋଷଣଟାକୁ କେହି ତାକୁ ପେଟ ପୁରି ଖାଇବାକୁ ଦିଏ ନାହିଁ । ଏଣେ ମାଆର ଥାଏ ଆଠଟି ପିଲା—ସେଥିରୁ ଗୋଟିଏ ଦୁଇଟି ବଡ଼ ଦୁର୍ବଳ ।

ତେଣୁ ମାଆ ଦେହରୁ ଗୋଟିଏ ଛୁଆରୁ ଅଧିକ ବଞ୍ଚିବା କଷ୍ଟକର । ସେଥିରେ ପୁଣି ଖାଇବାକୁ ନ ମିଳିଲେ ସେଇ ଗୋଟିଏ ଦେହ ବା ଗୋଟିଏ ଛୁଆଙ୍କୁ ଯଥେଷ୍ଟ ତେଣୁ ନାହିଁ ।

ପାଖରେ ଅସଂଖ୍ୟ ଘରେ ଫିଙ୍ଗା ଫୋପଡ଼ା ଚାଲିଥାଏ । କାହାକୁ ତରକାରୀ ରୁଚୁ ନାହିଁ ତ ପୁଣି କିଏ ପ୍ରତିଦିନ ଭାତ ଖାଇବାକୁ ରାଜି ନୁହେଁ । ନିଜର ପିଲା ଗେହ୍ଲା ହେବାକୁ ଆରମ୍ଭ କଲେ ସଂସାରର ଆଇନ୍ ପିଲାର ଆଇନ୍ ଆଗରେ ହାରମାନେ । ସଂସାରର ବାଟ ହେଉଛି ଗେହ୍ଲାପଣିଆର ଦଣ୍ଡ ଓ ଶାସ୍ତି ।

ମଣିଷ ଯଦି ଗେହ୍ଲା ହୋଇ ନ ଥାନ୍ତା ତାହା ହେଲେ ତାର ଚଳିବାର ଅସୁବିଧା ନ ଥାନ୍ତା । କଲିର ପରିବାର ପରି ସଂସାରରେ ବହୁତ ପ୍ରକାରର ଗେହ୍ଲାଙ୍କର ପରିବାର ରହିଛି । ଏଇ ଗେହ୍ଲା ପଣିଆର ସାରକଥା ହେଲା—

ମା' ଧାନକୁଟି ପୁଅ ନାଗର ।

ଘରର ଜମିଜମା ବନ୍ଧା ଦେଇ ଲୋକ ଗଢ଼ିବାକୁ ବିଦେଶ ଯାଇ ସେଠି ସ୍ଥାନୀୟ ଆନ୍ଦୋଳନରେ ଭାଗ ନେଇଛନ୍ତି । କିଏ ଯାଇ ବର୍ଲିନ ପ୍ରାଚୀର ଢାଆଁଶ ବିରୁଦ୍ଧରେ ସତ୍ୟାଗ୍ରହ କରିଛି, ଆଉ କିଏ ଯାଇ ବିଦେଶରେ ଯେ କୌଣସି ଗୋଟିକୁ ହୃଦୟ ବିକି ଦେଇ ନିଜର କରିନେଇଛି ।

ପୁଅ ରୁଷିଛି । ସ୍ତ୍ରୀ ରୁଷିଛି । ବାବୁ ରାଗୁଛନ୍ତି । ତାଙ୍କର ବଡବାବୁ ବଡବାବୁଙ୍କର ହାକିମଙ୍କର ପୋଷା ଗେହ୍ଲା ହୋଇପାରୁ ନାହାନ୍ତି । ସଂସାରର ବାଟରେ ବହୁତ ଧୂଳି ଉଡୁଛି—ଇଏ ହେଲା ଗେହ୍ଲାର ମୂଲ ।

କିନ୍ତୁ ସେଥିଭିତରେ କୁକୁରର କେଉଁଟି ଛୁଆକୁ ବଞ୍ଚାଇବାକୁ କାହାର ମନରେ ଇଚ୍ଛା ନାହିଁ । ସେଇ ଛୁଆ ହୁଏତ ପକ୍ଷକ ପରେ ଆଖି ଖୋଲି ପଦାକୁ ଆସିଲେ ତାଙ୍କୁ

http://oaob.nitrkl.ac.in

ଚଳାଇବେ ଈଶ୍ୱର ଈଶ୍ୱରଙ୍କ ଉପରେ ଏଇ କାମ ମଣିଷ ଲଦି ଦିଏ—ତୁମେ ଯଦି କୁକୁର ଛୁଆଙ୍କୁ ସଂସାରକୁ ଆଣିଛ ତେବେ ତାଙ୍କୁ ଚଳାଇବା ଭାର ତମର ।

କିନ୍ତୁ ଆମ ପିଲାଙ୍କର ଯେ ପୁରା ଜୀବନଟାଯାକ ସୁବିଧା ରହିବ ଏତକର ଦାୟିତ୍ୱ ତୁମର—ତୁମେ ଠାକୁରଙ୍କର ।

କୁକୁରଙ୍କୁ ଦୟା ଦିଆ ହେଉଛି । ସକାଳୁ ସେ ଫୁଲ ଧୂପ ପାଉଛନ୍ତି । ତାଙ୍କର ଅସଂଖ୍ୟ ରୂପକୁ ଆମେ ମନେପକାଇ ତାଙ୍କୁ ଖୁସାମଦ କରୁଛୁ । ତେଣୁ ସେ ଆମର ପୋଷା ମାନିବାକୁ ବାଧ୍ୟ ।

ଯଦି ଠାକୁର ପୋଷା ନ ମାନିଲେ ବା ଆମର ସୁବିଧା ନ କଲେ ତେବେ ମଣିଷ ତାଙ୍କୁ ବିଦାୟ ଦେଇ ଦିଏ । ଆଗରୁ କହୁଥିଲି—ଠାକୁର ଭଲ । ଚିଡ଼ିଯାଇ କହେ ଠାକୁର ଖରାପ । ତାଙ୍କର ଚିତ୍ର ଓ ମୂର୍ତ୍ତିକୁ ଫୋପାଡ଼ିଦିଏ ।

ଚେଷ୍ଟା ଯତ୍ନ ପରେ ଫଳ ନ ମିଳିଲେ କ'ଣ ପାଇଁ ସେଇ ବେକାରିଆ ଧନ୍ଦାରେ ମଣିଷ ଲାଗିବ ? ଅନେକ ଭକ୍ତ ଏଇ ଶ୍ରେଣୀରେ ରହି ପ୍ରତିଦିନ ବଡ଼ ପାଟିକରି ଲାଉଡ଼୍ସ୍ପିକର ଆଦି ଦ୍ୱାରା ମହିମାପ୍ରଚାର କରନ୍ତି । ସେ କାମ ସରିଲେ କହନ୍ତି—ଇସ୍ କାମ୍ ମେ ହଜାର ରୂପେୟା ଗିୟା…

ଅଳ୍ପ ପଇସାରେ ଈଶ୍ୱର ଦୁର୍ଲଭ । ବେଶି ପଇସାରେ ଈଶ୍ୱର ନିଶ୍ଚୟ ସୁଲଭ । ଦାମିକା ଔଷଧ ମଣିଷକୁ ହିତ କଲାପରି ଦାମିକା ପୂଜାପାଠ ମଣିଷକୁ ହିତକାରୀ ।

ସେଥିରେ ଅପର ଜୀବନପ୍ରତି ଦୟା ଦେଖାଇବା ଗୋଟାଏ ଚମତ୍କାର ବିଭ୍ରାଟ । ଠାକୁର ପୂଜା ନ କରି ସକାଳୁ ପିମ୍ପୁଡ଼ି କାଉ ଇତ୍ୟାଦିଙ୍କୁ ଖୁଆଇବା କ'ଣ ଠାକୁର ପୂଜା ?

ଆମେ ଖାଇବାକୁ ନ ଦେଲେ କ'ଣ ପିମ୍ପୁଡ଼ି କାଉ ଆଦି ବଞ୍ଚନ୍ତେ ନାହିଁ ? ସେମାନେ ଖାଇଲା ବେଳେ କ'ଣ ଆଶୀର୍ବାଦ କରିପାରନ୍ତି ? ତାଙ୍କୁ ଜଣେ ଧାର୍ମିକ ଲୋକ ଖୁଆଉଛି ଏତିକ କ'ଣ ଭାବିପାରନ୍ତି ।

ଯେଉଁ କାମରେ ଆଶୀର୍ବାଦ ନାହିଁ ସେ କାମ ନିଷ୍ଫଳ ।

କଟକ ମ୍ୟୁନିସିପାଲିଟିର କୁକୁରମରା ଅଭିଯାନ ଗୋଟାଏ ଚମତ୍କାର ବିଷୟ । କଟକରେ ଲକ୍ଷେ କୁକୁର ରହିଛନ୍ତି ବୋଲି ଅଟକଳ କରାହୁଏ । ସେଇ କୁକୁର ହଠାତ୍ ପାଗଳ ହୋଇ ମଣିଷଙ୍କୁ କାମୁଡ଼ନ୍ତି । ସେମାନଙ୍କୁ ମାରିଦେବାର ଯୋଜନା ହୁଏ ।

ସମସ୍ତେ ସାଙ୍ଗର କୁକୁର । ସମସ୍ତଙ୍କ ପାଇଁ କାହାରି ନା କାହାରି ଦୟା ଓ ସହିଛା ରହିଛି । କିନ୍ତୁ ଘରେ ସେମାନଙ୍କୁ ରଖିବାର ସୁବିଧା ହୁଏ ନାହିଁ । ଘରେ

http://oaob.nitrkl.ac.in

ରହେ ସ୍ତ୍ରୀ—ଅନ୍ୟମାନେ ବାହାରେ ରହିବେ । ଭୁଲ କୁକୁର ସରକାରୀ ରାସ୍ତାରେ ନିଜର ଭାଗ୍ୟକୁ ଆଦର ରହିବ ।

ଏଇ କୁକୁର ପାଗଳ ହୁଅନ୍ତି । ତେଣୁ ତାଙ୍କୁ ମାରିବାକୁ ଯେତେ କୁକୁର ସେତେ ଖଣ୍ଡ ମାଂସ ଆଣି ସିଝାଇ କୁଚୁରମରା ବିଷ ଦେଇ ରଖିବାକୁ ହୁଏ । ଭୋର ବେଳରେ ମୁନିସିପାଲିଟି ଜିପ୍ ଆସି ରହିଯାଏ ଗ୍ୟ ଦୋକାନ ପାଖରେ ।

ହାକିମଙ୍କର ହୁକୁମ ପାଇଲେ ବିଷ ମିଶା ମାଂସଖଣ୍ଡ ପକାଇ ଦିଆ ହୁଏ । ଯେଉଁ କେତୋଟି ସେତେବେଳେ ମିଳନ୍ତି ଯମପୁରକୁ ଚାଲିଯାନ୍ତି ।

ନାର୍ଣ୍ଣିର ଭଉଣୀ ମାଂସ ଖାଇ ମରିଗଲା । ନାର୍ଣ୍ଣି ଖାଇଥିଲା—ସେ ମଲା ନାହିଁ । ଜିପ୍ ଚାଲିଗଲା । କୁକୁରଙ୍କୁ ନିପାତ କରିବାକୁ ଦରମା ଦେଇ ଲୋକ ରଖାହୁଏ । ସେମାନଙ୍କ ଘରେ ମଧ୍ୟ ଚାଲିଥାଏ ପୂଜାପାଠ ଓ ଧର୍ମ ।

ପଚାରିଲେ ସେମାନେ କହନ୍ତି ଯେ ଏଭି କୁକୁରଙ୍କୁ ମାରିବାରେ ପାପ ନାହିଁ । ସେମାନେ ବଞ୍ଚିଲେ ପାଗଳ ହୋଇ କାମୁଡ଼ିବେ ଓ କେଜାଣି କେତେ ବହୁମୂଲ୍ୟ ଜୀବନର ଧ୍ୱଂସର କାରଣ ହେବେ ।

ଜଣେ ଅତି ଧାର୍ମିକ ସାଧୁ ପ୍ରକୃତିର ଲୋକ କୁକୁରଙ୍କୁ ଶହ ଶହ ସଂଖ୍ୟାରେ ମାରି କର୍ତ୍ତବ୍ୟ କରିଛି ବୋଲି ଈଶ୍ୱରଙ୍କର ଆଶୀର୍ବାଦ ପାଇପାରିବ । ଏଇଟା ହେଲା ଧର୍ମ-ରାଜ୍ୟର ପ୍ରଶ୍ନ—ଯାହାର ଉତ୍ତର କେହି ଦିଅନ୍ତି ନାହିଁ ।

ଠାକୁରଙ୍କର ସେବା ପୂଜା ବିଧିରେ ଚଳାଇବା ପାଇଁ ମାଛ ଗାଆଁ ର ପୋଖରୀରୁ ମରାଯାଇ ଠାକୁର କାମ କରାହୁଏ । ଏଇ ଭକ୍ତମାନେ ଅଶେଷ ପ୍ରକାରର ସିନ୍ଦୁର ଚିଲକରେ ନିଜକୁ ସଜାଇ ଠାକୁରଙ୍କର ନିକଟରେ ରହି ଠାକୁରଙ୍କର ଭର୍ଜମା ଦେଉଥାନ୍ତି ।

ଜଣେ ପୋପ୍ ଓ ମନୀଷୀ କୃଷ୍ଣମୂର୍ତ୍ତି କହୁଛନ୍ତି ଯେ ଓକିଲ ବୃତ୍ତି ଧରିଥିବା ଲୋକ ଈଶ୍ୱର ବିରୋଧୀ । କାରଣ ଏଇମାନେ ହେଉଛନ୍ତି ସବୁ ପ୍ରକାରର ଧର୍ମର ଆଲୋଚକ । ଓକିଲମାନେ ଈଶ୍ୱରଙ୍କୁ ପାଉଛନ୍ତି ବୋଲି ଲୋକଙ୍କର ବିଶ୍ୱାସ, ତେଣୁ ପ୍ରତ୍ୟେକ ନରହନ୍ତା ଓ ପଶୁହନ୍ତା ଈଶ୍ୱରଙ୍କର ପ୍ରିୟପାତ୍ର ।

ଏଇ ବିଷ ଖାଇ ନାର୍ଣ୍ଣି ବଞ୍ଚି ଯାଇଥିଲା ଯେ ସେଇ ଦିନୁ ସେ ରହିଛି । ଘର ପାର ନାହିଁ । କେହି ତାର ପେଟ କଥା ନିୟମ କରି ବୁଝି ନାହିଁ ।

ସେ ରହୁଥିବା ରାସ୍ତାରେ ଜଣେ ଗୋଟିଏ ଘର ତିଆରି କଲା । ଇଟା, ବାଲି, ଗୋଡ଼ି ଆସିଲା । ମିସ୍ତ୍ରି ବି ଆସିଲେ । ନାର୍ଣ୍ଣି ଆପଣା ଭୁଇଁ ଗାଡରେ ଗୋଷ୍ଠୀ କଗୁଆଳ ପରି ନିଜେ କଗୁଆଳ ହେଇଗଲା ।

http://oaob.nitrkl.ac.in

କେବେ କେମିତି କାହାର ମନେପଡ଼ିଲେ ସେ ଖଣ୍ଡେ ରୁଟି ବା ଖଣ୍ଡେ ବିସ୍କୁଟ ପକାଇ ଦିଏ । ସେତିକି ପାଇ ନାଣ୍ଟି ଅତ୍ୟନ୍ତ ଖୁସି । ପୁଣି କେତେବେଳେ କିଏ ଆସି ତାକୁ ଦେବେ ବୋଲି ସେ ସାଦା ଜଗି ରହିଥାଏ ।

ଏତିକି ମଣିଷ କରିପାରେ ନାହିଁ । ଅପେକ୍ଷା କରିବାକୁ ଧୈର୍ଯ୍ୟ ନାହିଁ । ଫଳ ନ ପାଇଲେ ସେ ଚାଲିଯାଏ । କାରଣ ଆସ୍ଥା ରଖି ସେ ଟିକେଇ ରହିପାରେ ନାହିଁ ।

ନାଣ୍ଟି ଏମିତି ରହିଥିଲା ପୂରିବର୍ଷ । ତାକୁ କେହି କିଛି ଦେଇ ନାହାନ୍ତି । କିନ୍ତୁ ସେ ଜଗି ରହିଥିଲା ସେଇ ଘରକୁ ।

ଏମିତି ଲୋକ ଥିଲେ ପଚିଶ ବର୍ଷ ତଳେ । ଏଇମାନେ ଗୁମାସ୍ତା ମାନେଜର ହୋଇ ଅସଂଖ୍ୟ ରାଜା ଜମିଦାରଙ୍କର ବିଭବକୁ ସମ୍ପାଦିଥିଲେ । ଅଳ୍ପ ଅଳ୍ପ ନେଇ ଓ ମାରି ଖାଇଦେବାକୁ ଘୃଣା କରି ସେମାନେ ତାଙ୍କର ମାଲିକର ବଡ଼ତି ଓ ବଡ଼ପଣ ପାଇଁ ଅକାତରରେ ସବୁ ଦେଉଥିଲେ ।

ସେ ଲୋକ ମରିଗଲେଣି । କିନ୍ତୁ କେଇଟି ନାଣ୍ଟି ପରି କୁକୁର ଏବେ ବି ବଞ୍ଚି ରହିଛନ୍ତି । ନାଣ୍ଟିର ଗୋଡ଼ ଧୋଇ ପ୍ରତିଦିନ ପାଣି ପିଇଲେ ବି ଏଇ ବିଶ୍ୱାସଘାତକ ନୌକରମାନେ ପାପରୁ ମୁକ୍ତି ପାଇବେ ନାହିଁ ।

ଅଥଚ ଏହିମାନେ ଏବେ ଈଶ୍ୱରଙ୍କର ପ୍ରଧାନ ଭକ୍ତ । ଯେକୌଣସି ଉତ୍ସବରେ ସେମାନେ ଆଗୁଆ । କେଉଁଦିନ କେଉଁ ହାକିମକୁ ଜବାବ ଦେଇଥିଲେ ଯେ ତାହାର ସ୍ତ୍ରୀ ପିଲା ଗାତିଦିନ ସେଇ ବୀରକାହାଣୀ ଘୋଷି ହେଉଛନ୍ତି ।

—ଆମ ବାବୁ । ସ୍ୱାଁଙ୍କ ବାପା । ମୋଟେ ଖୁସାମଦ୍ ଜାଣନ୍ତି ନାହିଁ । ଜାଣି-ଥିଲେ ସେ ନିଶ୍ଚୟ ବହୁତ ଉପରକୁ ଯାଇଥାନ୍ତେ ।

—ପ୍ରକୃତ କଥା । ସମସ୍ତେ କାହିଁକି ଖୁସାମଦ କରିବେ ? ସମସ୍ତେ କ'ଣ ପାଇଁ ଲାଙ୍ଗୁଡ଼ ହଲାଇବବେ ?

ସବୁ କୁକୁର ଲାଙ୍ଗୁଡ଼ ହଲାନ୍ତି ନାହିଁ । ପ୍ରତ୍ୟେକ ଗୃହପାଳିତ ବାଧ୍ୟତାମୂଳକ ଲାଙ୍ଗୁଡ଼ ହଲାଏ ନାହିଁ । କେତେ ବି ଅହରହ ଫଁ ଫଁ ହେଉଥାନ୍ତି ।

ନୌକରସାହିରେ ଯେଉଁମାନେ ଏହି ପ୍ରକାରର ଲାଞ୍ଜ ହଲା କୁକୁର ନୁହନ୍ତି ତାଙ୍କରି ପାଇଁ ସେ ଅନୁଷ୍ଠାନ ତିଷ୍ଠିଛି । କିନ୍ତୁ ଲାଞ୍ଜହଲା ସଂଖ୍ୟା ବଢ଼ିଯାଉଛି ।

ମଣିଷ ହୋଇଯାଇଛି ଧୋକାବାଜ । ପ୍ରକୃତ କଥା କହିଲେ ଆଘାତ ମିଳିବ ବୋଲି ସେ ଧୂଇରକମର କଥା କହି ଧୋକାବାଜି କରୁଛି ।

http://oaob.nitrkl.ac.in

ଏଣେ ଈଶ୍ୱରଙ୍କୁ ଡାକୁଛ ତାହାର ପିଲାଙ୍କୁ ସଦ୍‌ବୁଦ୍ଧି ଦେବାକୁ । ଧୋକା-ବାଜର ପିଲା ସଚ୍ଚୋଟ ହେବ—ଏପରି ଶକ୍ତି ସର୍ବଶକ୍ତିମାନ୍‌ଙ୍କର ନାହିଁ । ତେଣୁ ଧୋକାବାଜ ବାହାରୁଛି ।

ଧୋକା ଦେବ କାହାକୁ ? ବାଧରେ ନିଜର ବାପା ମା, ଭାଇଭଉଣୀ ଓ ସ୍ତ୍ରୀ ଓ ପ୍ରେମିକଙ୍କୁ ମୁହଁରେ ଭଲ କଥା ଓ କମରରେ ଛୁରୀ ଚଳୁଛି ।

ଏଇ ଧୋକାବାଜ ସଂସାରର ଗୋଟାଏ ବ୍ୟତିକ୍ରମ ନାଣ୍ଟି—ତାହାର ପୁଅ ଗୁପକେଲ୍ ।

ନାଣ୍ଟି ବିନା ହୁକୁମରେ ନିଜର ବୁଦ୍ଧିରେ ଦୁଇବର୍ଷ ଜଗିଛି ସେହି ଘରକୁ । ପାଖ ପଡ଼ୋଶୀ ଆସି ଇଟା ଖଣ୍ଡେ ଧରିଲେ ନାଣ୍ଟି କାମୁଡ଼ି ଗୋଡ଼ାଏ । ତାକୁ ମାଡ଼ ଡର ଦେଖାଇଲେ ସେ ଅତ୍ୟନ୍ତ ହିଂସ୍ର ହୋଇପଡ଼େ ।

ମଣିଷ ଯଦି ଏମିତି ତାହାର ଲଭଷିତ କଥା ନ ଭାବି କର୍ତ୍ତବ୍ୟ କରିବାର ଇଚ୍ଛା ପାଆନ୍ତା ତାହାହେଲେ ଏଇ ସଂସାର ବଦଳିଯାଆନ୍ତା । ଯାହାର କେହି ନାହିଁ, ଯାହାର କିଛି ନାହିଁ ସେ ମଧ୍ୟ ସଂସାରରେ ଆଦର୍ଶର ସୌଧ ରଖିପାରେ ।

ସେଥିପାଇଁ ବି. ଏ., ଏମ୍. ଏ., ପି. ଏଚ. ଡ଼ି., ଆଇ. ଏ. ଏସ୍., ମନ୍ତ୍ରୀ ପଦବୀ ଦରକାର ନାହିଁ । କିନ୍ତୁ କର୍ତ୍ତବ୍ୟ କରିବାକୁ ରାଜି ନ ଥାଇ ଚୁଗୁଲି କରି ବୁଲିବା ନାଣ୍ଟି ପରି କୁକୁରଙ୍କର ମାଲିକଙ୍କର ଅଭ୍ୟାସ ।

ନାଣ୍ଟିର ଉପାୟ ନାହିଁ । ଖାଇବାକୁ ମିଳୁ କି ନ ମିଳୁ ତାକୁ ବାଧରେ ମା' ହେବାକୁ ହେବ ।

ନାଣ୍ଟି ମନା କରେ । ବାଧା ଦିଏ । କିନ୍ତୁ ସେଇ ଅଣ୍ଟିରା କୁକୁରଟା ନାଣ୍ଟିର ସ୍ତନକୁ କାମୁଡ଼ି ଅନେକ ସମୟ ତାକୁ ଉତ୍ତେଜିତ କରିବାର ଚେଷ୍ଟାରେ ଥାଏ ।

ଘର ଅଛି କି ନାହିଁ, ଖାଇବାକୁ ଅଛି କି ନାହିଁ—ଏହାର ବିଚାର ବାପା ମାନଙ୍କର ନ ଥାଏ । ସେମାନେ ସବୁବେଳେ ବଂଶ ବଢ଼ାଇବା କାମରେ ଆଗୁଆ । ମିଛ କହିବାରେ ପାରଙ୍ଗମ—ଦୋମୁହାଁ ହେବାରେ ଆଗୁଆ । ଆଉ କୌଣସି ପ୍ରକାରରେ ପିଲା କରାଇବାରେ ବଡ଼ ଦକ୍ଷ ।

ନାଣ୍ଟିର ପିଲା ହେଲା । ସେ ପାଖ ଘରେ ଛୁଆ କରିଥିଲା—ପାଞ୍ଚଟି ଛୁଆ ।

ଆରେ, ଏଇଟା ଏଠି କ'ଣ ଛୁଆ ଗାଲିଲାଣି । ଘର ଧୁଆଁର ଅସନା କରିବେ । ଏମାନେ ଯାଆନ୍ତୁ—ଏମାନେ ମରନ୍ତୁ ।

ନାଣ୍ଟି ଶୁଣେ । ବୁଝେ । ପୁଣି ସେ ବୁଝେ ନାହିଁ । ତାହାର ଅନ୍ୟ ଗତି ନାହିଁ ।

http://oaob.nitrkl.ac.in

ନାଣ୍ଡି ନ ଥିଲା ବେଳେ ତାହାର ପିଲାଙ୍କ ଉପରେ ଚଢାଉ ହୁଏ—ଢେଙ୍କା ଓ ବାଡ଼ି । ଗୋଟାଏ ଗୋଟାଏ ହୋଇ ପାଞ୍ଚଟି ଯାକ ମରିଗଲେ ।

କିଜେ ନାଣ୍ଡି ଫେରିଥିଲା ମୁନସିପାଲିଟି ଭିତ ପାଖରୁ । ତାହାର ପାଞ୍ଚଟି ଛୁଆରୁ ଗୋଟାଏ ବି ରକ୍ଷା ପାଇଲା ନାହିଁ ।

ସେ ମୁହଁ ଶୁଖାଇ କହିଲେ—ଶକ୍ତ ଥିଲେ ସେ ଈଶ୍ୱରଙ୍କୁ ଭର୍ତ୍ସନା କରନ୍ତା । ପଡ଼ଶା ଘର ବାଡ଼ି ପାଖରେ କୁକୁର ଛୁଆ ରହିଲେ ସୁବିଧା ହେବ ନାହିଁ । ରହିଲେ ବିପଦ—ଭେଣ୍ଡି ଗୁଡ଼ାଇଗଲେ ।

ଇଏ ହେଲା ମଣିଷର ଦୟାର ଇତିହାସ । ଆଶ୍ରିତକୁ ଆଶ୍ରା ନ ଦେବା ହେଉଛି ମଣିଷର କଥା । କିନ୍ତୁ ପ୍ରତି ଦିନ ପୂଜା କରିବା ତାଙ୍କର କାମ । କୈବଲ୍ୟରେ ଅଚଳା ଭକ୍ତି । ନିଷ୍ଠୁରତାରେ କିଛି ବିଗୁର ନାହିଁ ।

ତାହା ହେଲେ ସଂସାରରେ କ'ଣ ଧର୍ମ୍ମାତ୍ମା ନୁହନ୍ତି ? ଧର୍ମ୍ମ ଯାଙ୍ଗରେ ଧୋକା ଦେଇ ମଣିଷ କ'ଣ ରହିଯାଏ ?

ନାଣ୍ଡି ଯେଉଁ ଘରଟିକୁ ଜଗିଥିଲା ସେ ଘରେ ଲୋକ ଆସି ରହିଲେଣି । ହେଲେ ବି ନାଣ୍ଡି ଯେ ଗୁଣ୍ଡା କୁକୁର—ଏଇ ଅପବାଦ ତାହାର ଘୁଞ୍ଚିଲା ନାହିଁ ।

ଢ'ଢ'ଟା ଖାଇବାକୁ ମିଳିଲା— ସ୍ନେହରେ ନୁହେଁ କର୍ତ୍ତବ୍ୟ ଦୃଷ୍ଟିରୁ । କାମ କଲେ ଯେ ଅବଶ୍ୟ ସୁଫଳ ପୁରସ୍କାର ମିଳିବ, ଏପରି କଥା ନାହିଁ ।

ନାଣ୍ଡି ହୋଇଗଲା ଘରର ଜଣେ ଲୋକ—କିନ୍ତୁ ସେ ଜଞ୍ଜିର ପିନ୍ଧିଲା ନାହିଁ କିମ୍ବା ଗାଧୋଇଲା ନାହିଁ ।

ଏଇ ସଂସାରରେ ସବୁ ମଣିଷ ଜଞ୍ଜିର ପିନ୍ଧନ୍ତି ନାହିଁ । ସବୁ ପଶୁ ମଧ୍ୟ ଜଞ୍ଜିର ପିନ୍ଧନ୍ତି ନାହିଁ । ଜଞ୍ଜିର ପିନ୍ଧିଥିବା ଲୋକ ଗୋଟାଏ ଜାତି—ଗୋଟାଏ ପାଟକ । ସେମାନଙ୍କର ଦର୍ଶନ ଅଛି, ଲଭ ଓ କ୍ଷତିର ତାଲିକା ରହିଛି । ତାଙ୍କର ସମାଜ ଅଲଗା —ସେ ସମାଜକୁ ବୁଝିବାକୁ ହେଲେ ବିଭିନ୍ନ ଅନୁଷ୍ଠାନକୁ ଯିବା ଦରକାର ।

ସେଇ ସମାଜରେ ମଧ୍ୟ ବିପ୍ଳବୀ ଅଛନ୍ତି । ମନ୍ତ୍ରୀଙ୍କ ବିରୁଦ୍ଧରେ ଭାଷଣ ଦିଆହୁଏ । ଜଞ୍ଜିର ଥିବା ଲୋକଙ୍କର ସ୍ୱାସ୍ଥ୍ୟ ଓ ଭବିଷ୍ୟତ ବିଷୟରେ କଥା ପଡ଼େ । ଶେଷକୁ ଏମିତି ଠେଲାପେଲାରେ ଜଞ୍ଜିରରେ ବନ୍ଧା ହୋଇଥିବା ଲୋକ ତାଙ୍କର ସୁବିଧା ହାସଲ କରନ୍ତି ।

ନାଣ୍ଡି ଯଦି ଜଞ୍ଜିରଟା ମାନି ନେଇଥାନ୍ତା ତାହାହେଲେ ସେ ଭଲରେ ରହିଥାନ୍ତା । କାମ କମ୍—ଖାଇବା ଭଲ । ଆଦର ଯତ୍ନ ଅଧିକ । ତଥାପି ସେ ଓଲୁ

http://oaob.nitrkl.ac.in

ପର ରହେ—ଭୁଟେ ନାହିଁ । ସାମାନ୍ୟ ଅସୁବିଧାକୁ ଖାତିର ନ କରି ସେ ସ୍ୱାଧୀନ ରହେ ।

କିନ୍ତୁ ନାଣ୍ଟିର ଇଚ୍ଛା ମାଲିକର ଜଣେ ପ୍ରିୟ ଲୋକ ହେବା ପାଇଁ । ଏଣୁ ଯାକ ସେ ସୁବିଧା ପାଇଲେ ମାଲିକକୁ ଘଷି ହୋଇ ଚାଲିଯାଏ, ଦେଖାଇବାକୁ ଯେ ସେ ମାଲିକର କୁକୁର ।

ମାଲିକ ତାକୁ ଆଉଁସିଲେ ସେ ଖୁସି ହୁଏ । ମୁଣ୍ଡକୁ ଦେଖାଏ—ମୁହଁକୁ ଦେଖାଏ । ସୁବିଧା ପାଇଲେ ଟିକିଏ ଚାଟିଦିଏ । କିନ୍ତୁ ଧରାଦେଇ ରହିବାକୁ ଚାହେଁ ନାହିଁ—ଠିକ୍ ବାରନାରୀ ପରି ।

ବାରନାରୀ ସ୍ତ୍ରୀ ହେବାକୁ ଝୋଙ୍କେ ନାହିଁ । ସ୍ତ୍ରୀ ମଧ୍ୟ ବାରବନିତା ହେବାକୁ ପସନ୍ଦ କରେ ନାହିଁ । ପ୍ରତ୍ୟେକ ସମାଜର ଚଳନ, ଦର୍ଶନ, ଲାଭକ୍ଷତି ହିସାବ ଅଲଗା ।

ସେଣ୍ଟିମେଣ୍ଟ୍ ମଣ୍ଡଳୀମାନରେ ବନ୍ଧା ହୋଇ ରହିବାକୁ କେଜାଣି କେତେ ଚେଷ୍ଟା ନ ଚାଲିଛି ।

ଶିକ୍ଷା ଓ ସାଂସ୍କୃତିକ ବିଭାଗ ଖୋଜୁଛନ୍ତି ପଟିବନ୍ଧା ଲୋକ । ପଟିଫିଟାବାଲା ନ ମିଳିଲେ ପଟିବନ୍ଧା ଲୋକରେ କାମ ଚଳିବ । ସେଇମାନେ ରହି ରହି ଅନୁଷ୍ଠାନ ପକ୍ଷରୁ ବହୁତ ପରିମାଣରେ ଚମତ୍କାର କାମ ଦେଖାଇବେ ।

ଏଇ ସମାଜରେ ଦୁଇଟି ଶ୍ରେଣୀ ପଟି ବନ୍ଧା ଓ ପଟିଖୋଲା । ସେମାନଙ୍କ ଭିତରେ ଅପୋଷୀ ନାହିଁ । ନାଣ୍ଟି ହେଉଛି ପଟିଖୋଲା ଦଳର ।

ମାଲିକମାନେ ଦୁଃଖ କରନ୍ତି—ଆହା ବିଚରା ଟିକିଏ ପରାଧୀନ ହୋଇଗଲେ ବିଚରା ଗୋଟାଏ ବଡ଼ ମଣିଷ ହୋଇଯାନ୍ତା । ଭୁଟି ମଧ୍ୟ ଭୁଟିପାରୁ ନାହିଁ ।

ନାଣ୍ଟି ନାଁ ଥିଲା ନାଲି । ସେ ନାଁରେ ତାହାର ପୁରୁଣା ମାଲିକ ତାକୁ ଡାକୁଥିଲା । ପାତେଙ୍ଗ ଡେଉଁ ଚାଲିଆସିଲା ପରେ ଭୁଲରେ ନାଣ୍ଟି ହୋଇଗଲା ।

ନାଣ୍ଟି—ନାଣ୍ଟି ଡାକିଲେ ଜବାବ ଦିଏ । ଆସେ—ଖାଏ । ଚାଲିଯାଏ । କିନ୍ତୁ ଗୁଡ଼ାଏ ଦର୍ଶନ ବା ତତ୍ତ୍ୱ ଆଉଡ଼ାଏ ନାହିଁ ।

ନାଣ୍ଟି ଯଦି କଥା କହିଥାନ୍ତା ବା ତାହାର ମନର ଭାବନାକୁ ବୁଝାଇଥାନ୍ତା ତାହାହେଲେ କଲେଜର ଅଧ୍ୟାପକମାନେ ତାହାର ପାଖରେ ହାର ମାନନ୍ତେ । କାରଣ ନାଣ୍ଟିର ଜୀବନଟି ପରିବନ୍ଧ—ସେଥିରେ ମିଛ ଠକେଇ ନାହିଁ ।

http://oaob.nitrkl.ac.in

ପ୍ରଥମ ଥର ତାହାର ପାଞ୍ଚଟି ପିଲା ମରିଗଲେ । ଏଥିରେ ନାଣ୍ଡିର ଦୋଷ ନାହିଁ । ବାଉର କରପଟ୍ଟରେ ଛୁଆଙ୍କୁ ସେ ରଖିଥିଲା—ଭଗବାନ ତାକୁ ବୁଦ୍ଧି ଦେଇଥିଲେ ପିଲାଙ୍କୁ ବଞ୍ଚାଇବା ପାଇଁ ।

ନାଣ୍ଡି ତାହାର ଆଧାର ଆଣି ଛୁଆଙ୍କୁ ଦେବ । ସେଥିରେ ମଣିଷ ତାହାର ଫଳବୁଦ୍ଧି ଖଟାଇ ପିଲାଙ୍କୁ ମାରିଦେବ—ଏତକ ସେ ଜାଣିବ କିପରି ?

ନିଜର ଜ୍ଞାନ କେବେହେଲେ ସଂସାରର ଲାଭକ୍ଷତିର ମାପ ନୁହେଁ । ନାଣ୍ଡିର ବିଶ୍ବାସ ବୁଦ୍ଧି ଓ ଭରସା ତାହାର ପିଲାଙ୍କୁ ରକ୍ଷା କରିପାରିଲା ନାହିଁ ।

ଗୋଟିଏ ଗୋଟିଏ ହୋଇ ସମସ୍ତେ ମଲେ । ପାଖ ଲୋକ ଦୁଃଖ କଲେ—ବିଚରା କୁକୁର ଛୁଆଙ୍କର କି ଦୋଷ ? କିନ୍ତୁ କେହି ସେ କୁକୁରଙ୍କ ସପକ୍ଷରେ ପଦେ କହିଲେ ନାହିଁ । କାରଣ ମଣିଷ ସମାଜ କୁକୁର ସମାଜର ଉପରେ ।

ସବୁ ଛୁଆ ମରିଗଲା ପରେ ସେ ବାବୁ ଖୁସି—ବାବୁଆଣୀ ଖୁସି । ଆଉ ସେମାନେ ଅଳିଆ କରିବେ ନାହିଁ । କୁକୁର ମା'ର ପୁଞ୍ଜି ଖାଲି ହୋଇଗଲା । ଈଶ୍ବର ତାକୁ ପାଞ୍ଚୋଟି ଛୁଆ ଦେଇଥିଲେ । ପୁଣି ତାଙ୍କୁ କାଢ଼ି ନେଇଗଲେ ।

ଏଇ ନ୍ୟାୟ ଅନ୍ୟାୟର ଜଟିଳର ଜଞ୍ଜିରରେ କେବେହେଲେ ଉଚିତ୍ ବିଗ୍ଚାର ମିଳିପାରେ ନାହିଁ । ଯେଉଁମାନେ ଖରାଦିନେ ଚଢ଼େଇଙ୍କୁ ପାଣି ଦିଅନ୍ତି ରାସ୍ତା ଗୋରୁଙ୍କ ପାଇଁ ପାଣିକୁଣ୍ଡ ରଖନ୍ତି ସେମାନେ ମଧ୍ୟ ଏମିତି ଧ୍ବଂସ ଲୀଳା କରିଥାନ୍ତି !

ନାଣ୍ଡିର ଦୁଃଖ ବିଷୟରେ ଓଡ଼ିଆ କବି ଓ ଗାଳ୍ପିକ କିଛି ଭାବିବା ଦରକାର ନାହିଁ । ତାଙ୍କର ଚିନ୍ତା ଉପକରଣ ହେଲା ଯେ ତାଙ୍କର ପିଲାମାନେ ବଡ଼ ହେବେ । ଅନ୍ୟାୟର ମାଳାକୁ ସେ ନିଜର ଭୂଷଣ କରି ଭଲ ଖାଇବେ ।

ମଣିଷ ହେଉଛି ଏମିତି କଳଙ୍କ । ତାହାରି ପାଖରେ ନାଣ୍ଡି ପରି କୁକୁର ହେଉଛି ଗୋଟାଏ ଲେଖାଏ ଚିନ୍ତାର ଧାରା ।

ଯେଉଁମାନେ ପରପାଇଁ ସମଦୁଃଖୀ ନ ହୁଅନ୍ତି ସେମାନେ ହେଉଛନ୍ତି ଆଦର୍ଶ ଦୁଃଖୀ—ଲୁଚେଇ ଛପେଇ ମଣିଷକୁ ହତ୍ୟା କରି ତାହାର ଦେହ ଉପରେ ପଥ ଯୋଗାନ୍ତି ।

ତେବେ କ'ଣ ଈଶ୍ବରଙ୍କର ଦୟା ନାହିଁ ? ସେ କ'ଣ ଜଗତର କୁକୁର ମାଆଟିଙ୍କୁ ଏମିତି ଅସୁବିଧାରେ ପକାଇବେ ।

ନାଣ୍ଡି କ'ଣ ଗୋଟାଏ ଘର କରିବ ? ନା, ନିଜେ ସଂଯମ ଆଚରଣ କରିବ ? ତାହାର ପିଲାଙ୍କୁ ସେ ଟିକିଏ ଆଦର ଯତ୍ନ କରି ବଢ଼ାଇବ ନାହିଁ ।

http://oaob.nitrkl.ac.in

ନାରୀ ହୋଇ ମାଆ ହେବାର ସମ୍ଭାବନା ଯେତେବେଳେ ଦେଖାଯାଏ, ନିଜର ଶିକ୍ଷା, ସଂସ୍କୃତି ଓ ଚାକିରି ଆଦି ଭୁଲି ମହିଳାମାନେ ଡାକ୍ତର ପାଖକୁ ଚାଲନ୍ତି—ଯେପରି ହେଉ ମାଆ ହେବାର ଗୌରବ ମିଳିବା ଦରକାର ।

ଯେତେବେଳେ ନାରୀ ପାଗଳିନୀ । ନିଜର ସ୍ୱାମୀକୁ କେତେ ଯେ ପ୍ରବଞ୍ଚନା ଦେଇଥାନ୍ତି ସନ୍ତାନଟିଏ ପାଇଁ—ସମ୍ପର୍କ ବଡ଼ ବ୍ୟବହାର କଷ୍ଟ ହୋଇଉଠେ । ସ୍ୱାମୀ ବୋଲିଇ ଯଦି ଗୋଟିଏ ସନ୍ତାନ ହେଇ ନ ପାରିଲା ତାହାହେଲେ ସେଇ ସ୍ୱାମୀର ପଦବୀ ରଖି ଲାଭ କ'ଣ ?

କଟକ ଭୁବନେଶ୍ୱର ଆଦି ସ୍ଥାନରେ ଲୋକ ଚାଲିଛନ୍ତି ସିନ୍ଥା ଅଣ୍ଡା ଦୋକାନ ଅଛି ଓ ଔଷଧ ଦୋକାନ ଆଛି ।

ମାଆ ନ ହେଇ ପାରିବା କାହାର ଦୋଷ ? ପୁରୁଷ ନା ସ୍ତ୍ରୀର ? ଏଇ ସମୀକ୍ଷା କରୁ କରୁ ଅନେକ ସ୍ତ୍ରୀର ଜୀବନ ବିକ୍ଷୁବ୍ଧ ହୋଇଉଠେ । ଶେଷକୁ ସେ ଲୋକକୁ ବିଦାୟ ଦେବା ପାଇଁ କୋର୍ଟ କଚେରୀର ସାହାଯ୍ୟ ଦରକାର ପଡ଼େ ।

ପଶୁ ଜଗତରେ ଏଇ ସମସ୍ୟା ନାହିଁ । ରୁଚିଥିବା ମଣିଷ ସମାଜରେ ଏଇ କରୁଣ ଇତିହାସର କାହାଣି ବିକ୍ଷୁବ୍ଧ ହେଇପଡ଼ୁଛି ।

କାରଣ ଯେତେବେଳେ ନାରୀ ମା' ହେବାକୁ ଅଯଥା ଆଗ୍ରହ ଦେଖାଇଛି ସେତେବେଳେ ଯେ ଦୁଆର ବନ୍ଦ ରହିଛି । ନିଜର ଦରମା, ଚାକିରି, ସାଜପୋଷାକ ବଦଳରେ ମାତୃତ୍ୱ ଆସିପାରୁ ନାହିଁ ।

ନାଣ୍ଡି ବିଚାରୀ ଏହି ଦୁଃଖ ଭୋଗି ନ ଥିଲା । ତାହାର କୁକୁର ଦେହରେ ମାତୃତ୍ୱ ଜାଗିଛି । ପାଟରେ ବାପା ହେବା ପାଇଁ ଦ'ଗଣ୍ଡା ଗଣ୍ଡାଏ ଲଢ଼ୁଛନ୍ତି—କିଏ ପାରିବ ନାଣ୍ଡିକୁ ।

ନାଣ୍ଡି ଏସବୁ ଖାତିର କରେ ନାହିଁ । ସଂସାରରେ ନିୟମରେ ଯାହା ଯେତେ-ବେଳେ ମିଳିବ ସେଇଟା ହେଲା ନିୟମ । ନାଣ୍ଡି ପାଖରେ ଗୋଟାଏ ପ୍ରେମିକ ଆସି ଶୋଇ ରହେ ଘଣ୍ଟା ଘଣ୍ଟା । ନାଣ୍ଡି ତେଣେ ଚାହେଁ ନାହିଁ ।

ଉତାଲା ହେଇ ମାତୃତ୍ୱ ଦେବାକୁ ମଧ୍ୟ ଆଗ୍ରହ ନାହିଁ । ପଛ ଠିକ୍ ହୋଇଗଲେ ସୁବିଧାରେ ସବୁ ହେବ ।

କେତେବେଳେ କ'ଣ ହେଇଥିଲା ଜଣାପଡ଼ିଲା ନାହିଁ । ଖାଲି ମାଲିକର ଘରୁ ପାଟି ଶୁଭେ—ଆମ କୁକୁର ଚାଲିଗଲାଣି ଏଇ ଘର ଛାଡ଼ି ।

http://oaob.nitrkl.ac.in

—ଆମେ ତାକୁ ଆଶ୍ୱାସନା ଦେଇ ରଖୁ ନାହିଁ ତାକୁ ଖାଇବାକୁ ଦେଲେ ସେ ଛୁଏଁ ନାହିଁ । ଉପାସରେ ରହେ ।

—ଏଠି ଖାଉ ନାହିଁ ତ । ଏଠିକି ଆସୁ ନାହିଁ ତ ।

—ଘରକୁ ଆସିଲେ ତାକୁ ବାନ୍ଧି ରଖ ।

ନାଣ୍ଟିର ପ୍ରେମିକ ଧରା ପଡ଼ିଥିଲା ଯେମିତି ସେମାନେ କର୍ଣ୍ଣର ଲଗାଇଲେ ସେ କାମୁଡ଼ି ଦେଲା ମାଲିକକୁ—ସବୁବେଳେ କର୍ଣ୍ଣର ଦେଖାଇବା ଉଚିତ୍ତ ନୁହେଁ ।

ସେ ଆଉ ତାହାର ମାଲିକ ଘରକୁ ଗଲା ନାହିଁ । ବିଶ୍ୱାସୀ କୁକୁର—କାମୁଡ଼ି ଦେଇଛି । ତାହାର ଅନୁଶୋଚନା ଆସେ । ସେ ଅଉ ଯାଏ ନାହିଁ । ଆଗେ ବଂଶ ବଢ଼ୁ—ତା'ପରେ ଖାଇବା, କର୍ଣ୍ଣର ପିନ୍ଧିବା ବଳେ ଆସିବ ।

ଅତ ସ୍ନେହ ପରେ ସେ ନାଣ୍ଟି ପାଖରେ ଘଣ୍ଟା ଘଣ୍ଟା ଶୋଇଥାଏ । ନାଣ୍ଟିକୁ ବିରକ୍ତ କରେ ନାହିଁ । କାରଣ ବଂଶ ବଢ଼ାଇବା ସୁବିଧା ସବୁ କୁକୁରଙ୍କୁ ମିଳେ ନାହିଁ ।

ଲୋକ ନଜର ଖିଆଲରେ ଶ୍ରେଷ୍ଠ ଶ୍ରେଷ୍ଠ କୁକୁର ପୋଷନ୍ତି । ବାଧରେ ସେ ମହନ୍ତ ବ୍ରହ୍ମଚାରୀ ହୋଇ ରହିବ—କାରଣ ତାହାର ସାଥି ନାହିଁ ।

ଥରେ ଏମିତି ଗୋଟାଏ କୁକୁର ତାହାର ସମାନ ପ୍ରେମିକଟିଏ ପାଇଲା । କି ଉତ୍ସାହ—ସେ ଅଉ ଯିବ ନାହିଁ । ଏଇ ତାହାର ଜୀବନରେ ଶେଷ ସୁଯୋଗ ।

ଏକାଠି ହୋଇ କୁକୁର ଦୁଇଟି କିଛି ସମୟ ବିତାଇଲା ପରେ ଅଣ୍ଡିରା କୁକୁରଟି ଥରିବାକୁ ଆରମ୍ଭ କଲା—ବହୁତ ଦିନର ବ୍ରହ୍ମଚର୍ଯ୍ୟ । ବହୁତ ବର୍ଷପରେ ଗୋଟିଏ ସୁଯୋଗ ।

ଗରମ ଦୁଧ ଦିଆଗଲା । ସେ ପିଇଲା—ଥରୁଥାଏ । ଶେଷକୁ ପଡ଼ି ଛଟ ଛଟ ହୋଇ ମରିଗଲା ।

ପଶୁ ଜଗତରେ ଏଇ ଯେଉଁ ଆତ୍ମଘାତୀ ଉତ୍ସାହ, ମଣିଷ ଜଗତରେ ଦୁର୍ଲଭ । ସେମାନେ ଖୋଜନ୍ତି ଶାଢ଼ି, ପାଉଡ଼ର, ଅତର ଓ ଗହଣା ପୁଣି ଦରକାର ଅନେକ ରକମର କଥା । ନାଣ୍ଟି ପାଇଁ କିଛି ଦରକାର ନ ଥାଏ । ତାହାର ପନ୍ଥା ଶୁଖିଯାଇଛି —ପିଲା ହେଲେ ସେ ପୁଣି ସତେଜ ହେବ । ତାହାର ବି. ଏ. ଏମ୍. ଏ. ଆଦି ଶିକ୍ଷାଗତ ଯୋଗ୍ୟତା ଅଛି କି ନାହିଁ ସେ କଥା ବିଚାରର ବାହାରେ । ମଣିଷ ଏତିକି ଶିଖିବାକୁ ରାଜି ହେଉ ନାହିଁ ।

http://oaob.nitrkl.ac.in

ତେଣୁ ନାଣ୍ଟି ରହିଛି ସମସ୍ତଙ୍କୁ ଦେଖାଇ ଦେବାକୁ—ଯେ ଯାହାର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ବୋଲି କିଛି ନାହିଁ ସେ ତାହାର କୁକୁର ବଂଶ ବଢ଼ାଇବ ନାହିଁ କାହିଁକି ?

ନାଣ୍ଟି ସରକାରୀ ଗୁଜରଆଙ୍କ ପରି ଚେନ୍ ନେଇ ନ ଥିଲା । କୌଣସି ଜାଗାରେ କିଛି ସଞ୍ଚି ନ ଥିଲା । ତାପରେ କ'ଣ ହେବ କି ନ ହେବ, ସେ ଚିନ୍ତା ନ ଥିଲା ।

ଲୋକ ଦେଖୁଥିଲେ ନାଣ୍ଟି ତାହାର ରୁଟି ଖଣ୍ଡିକ ନେଇ ମାଟିରେ ପୋତେ । ଭୋକ କଲେ କାଢ଼ି ଖାଇବ ବୋଲି ସେ ସଞ୍ଚୟ ଛଅ ଆଠ ଘଣ୍ଟା ପାଇଁ । କିନ୍ତୁ ଭବିଷ୍ୟତର ହିସାବ ସେଥିରେ ନାହିଁ ।

ସଂସାରରେ ଯେଉଁମାନେ ହିସାବ କିତାବ କରି ଜୀବନକୁ ଚଲାଇବାକୁ ଆଗ୍ରହୀ ଅନ୍ତତଃ ନାଣ୍ଟିକୁ ଦେଖିବା ଦରକାର । ଗୋଟିଏ ଗୋଟିଏ ହୋଇ ପାଞ୍ଚଟି ପିଲା ତାହାର ମରିଗଲେ କଷ୍ଟୁରୀଙ୍କର ହୃଦୟହୀନତାର ମାଡ଼ରେ । ସେଥିକି ତାହାର ଅନୁଶୋଚନା ନାହିଁ ।

ଯିଏ ଦେଇଥିଲା ସେ ନେଇଗଲେ । ପୁଣି ସେ ଦେବେ । ଗଛରେ ପୁଣି ଫୁଲ ଫୁଟିବ, ଫଳ ଧରିବ । ନାଣ୍ଟି ରହିବ ଚିର ଯୌବନ ରଖି ।

ମଣିଷ ତାହାର ଯୌବନକୁ ମାପିଲାବେଳେ ବୟସ, ସ୍ୱାସ୍ଥ୍ୟ ଆଦି ଅନେକ ସରଞ୍ଜାମ ନେଇ ମାପେ । ତାହାର ହିସାବରେ ଯୌବନ ଊଣା ନମ୍ବର ପାଇଲେ ସେ ଯୌବନକୁ ଫେଲ ନମ୍ବର ଦେଇ ଚାଲିଯାଏ ।

କିନ୍ତୁ ନାଣ୍ଟିର ସେ ସମସ୍ୟା ନାହିଁ । ଯେଉଁଠି ଯୌବନର ସମସ୍ୟା ଦେଖାଦିଏ ସେଠି ମଣିଷ ତାହାରଠାରୁ କୋଡ଼ିଏ, ପଚିଶି, ତିରିଶି ବର୍ଷ ଅଧିକ ଲୋକଙ୍କୁ ଯୁବକ ଓ ଯୁବତୀର ସାର୍ଟିଫିକେଟ ନେଇ ଗ୍ରହଣ କରିନିଏ ।

ପଶୁ ଜଗତରେ ଯେଉଁଟା ଅତି ମାମୁଲି କଥା, ମଣିଷ ଜଗତରେ ସେଇଟା ଅତି ଅଘଟଣ କଥା ।

ନାଣ୍ଟିର ପେଟ ବାହାରିଲାଣି । ଯାହାହେଉ ବିଚାରୀର ଲାଜ ସଙ୍କୋଚ ଅଛି— ଅନ୍ଧାର ଭିତରେ ସେ ତାହାର ପ୍ରେମିକ ସାଙ୍ଗରେ ଏକାଠି ଜୋଡ଼ି ଖାଇଛି ।

ଗୁରି ଗୋଡ଼ି ପଦାକୁ ବାହାରିଥିବ ଓ ଏଣେ ପୁରୁଷ ସ୍ତ୍ରୀ ଜୋଡ଼ି ଖାଉଥିବେ— ଏଇ ଯେଉଁ ଦୃଶ୍ୟ ବଡ଼ ବଡ଼ ମେଳାରେ ଦେଖିବା ଘଟଣା ସେପରି ଦୃଶ୍ୟ ନାଣ୍ଟି ଦେଖାଇ ନାହିଁ ।

ତରକ ହେଉଛି ବ୍ୟବହାରର ବିଚାର । ସେଥିରେ ପଶୁ ଓ ମଣିଷ ସମାନ । ସମସ୍ତଙ୍କର କିଛି ମର୍ଯ୍ୟାଦା ଜ୍ଞାନ ଅଛି । ନାଣ୍ଟିର ନିଶ୍ଚିତରେ ଆଗପଛ ବିଚାର ରହିଛି ।

http://oaob.nitrkl.ac.in

ନ ହେଲେ ସେ ଏତେ ପ୍ରିୟ ହୁଅନ୍ତା କେମିତି ? ଜାଣିକରି କରୁ ବା ନ ବୁଝି କରିଥାଉ, କି ମଣିଷ କି ପଶୁ, ଯିଏ ଯେତେବେଳେ ସଂସାରରେ ନିୟମକାନୁନ ମାନିଛନ୍ତି ସେମାନେ ନିଶ୍ଚିତରେ ଚରିତ୍ରବାନ୍ ।

ଚରିତ୍ରର ଅର୍ଥ ହେଲା ଲୋକଦେଖା ଚରିତ୍ର - ମନର ଚରିତ୍ର ନୁହେଁ । ବାପା-ମା'ଙ୍କର ଚରିତ୍ର ଲିପି, ସ୍ୱାମୀସ୍ତ୍ରୀଙ୍କର ଚରିତ୍ର ଲିପି, ସ୍କୁଲ ହେଡ଼ମାଷ୍ଟରଙ୍କର ଓ ସରକାରୀ ଚରିତ୍ରଲିପି ହେଉଛି ଶଠତା ।

ମଣିଷକୁ ଏଇ ଶଠତା ଏତେ ଭଲ ଲାଗେ ଯେ ସେ ସେଇ ଚରିତ୍ରଲିପିକୁ ଲେଖି ଲେଖାଇ ପଢି ପଢ଼ାଇ, କହି କୁହାଇ ଚରିତ୍ରର ଚିତ୍ର ଆଙ୍କେ, ବଡ଼ ଖୁସି ହୁଏ ।

ମୋ' ସ୍ତ୍ରୀ ଜଣେ ସତୀ । ମୋର ଝିଅ ଏକାବେଳେକେ ଆଦର୍ଶ । ମୋର ପୁଅ—ଅତି ଉତ୍ତମ ଓ ଚରିତ୍ରବାନ୍ ।

ଯେତେ ଚରିତ୍ରର ଇତିହାସ କହି କୁହାଇ ଲୋକେ ଅଣନିଃଶ୍ୱାସୀ ହେଉଥାନ୍ତି ସେଥିରେ ବେଶ୍‌ବୁଝି ହୁଏ ଯେ ଏଇ ସଂସାରରେ ସବୁଠାରୁ ଦୋମୁଣ୍ଡିଆ ଶବ୍ଦ ହେଉଛି ଚରିତ୍ର ।

ନାରୀର ଚରିତ୍ର ଭଲ । ତାହାର ପ୍ରେମିକର ଚରିତ୍ର ଭଲ । ନହେଲେ ଏମାନଙ୍କର ପିଲାମାନେ ବଞ୍ଚିବେ କେମିତି ? ଯାହାର ଚରିତ୍ର ଅଛି ତାହାର ସବୁ ଅଛି ।

ଚରିତ୍ର ପାଇଁ ନାରୀ ଦିନକୁ ତିନି ଗୃହଖଣ୍ଡ ରୁଟି ପାଏ—ବର୍ଷର ଗୁଡ଼ାଏ ପିଲା ଜନ୍ମ କରିବ । ନ ଖାଇଲେ ସେ କ'ଣ କରିବ ? ସମସ୍ତେ ଲାଗିଯାନ୍ତି ନାରୀର ପିଲାଙ୍କର ସ୍ୱାସ୍ଥ୍ୟ ବିଷୟରେ ।

ନାରୀ ଅର୍ଥ ପେସାଏ ନାହିଁ । ଅର୍ଥ ଚକଟେ ନାହିଁ । ଭଗବାନ ତାକୁ ଦେବେ—ସେଥିପାଇଁ ତାହାର ମାଲିକ ମନରେ ସାମାନ୍ୟ ଦୟା ଓ ସହାନୁଭୂତି ଦେଇ ଈଶ୍ୱର ତାଙ୍କର କାମ କରିଦିଅନ୍ତି ।

ଈଶ୍ୱରଙ୍କର ଏହି ପ୍ରତିନିଧି ମାଆ, ଅଜା. ଆଈ ଓ ଦେଶର କର୍ମୀ ଓ ନେତା । ଜଣଙ୍କର ଦୟା ମିଳିଲେ ଜୀବନଟା ଭରପୂର ହୋଇଯାଏ ।

ଗୁହ୍କରିଆ ଜୀବନରେ ଏଇ ଦୟା ବାରମ୍ବାର ଆସେ । ଦୟା ମିଳିଗଲା ପରେ ସେମାନେ ଘରକୁ ଫେରି ନିଜକୁ ଅତି କାଢ଼ୁ ବୋଲି ବିଷ୍ଣାନ ଦିଅନ୍ତି । ଅପରର ଦୟା ଓ ନିଜର ଯୋଗ୍ୟତାକୁ ସମାନ ପାହିଚରେ ରଖନ୍ତି ।

ଏମିତି ଯୋଗ୍ୟତାର ବିସ୍ତର ହୁଏ—ବେକର ପଟି ବା କଞ୍ଚିର ହେଉଛି ଯୋଗ୍ୟତାର ମାପକାଠି । ସେଥିରେ ଯେ ଦ'ଗୃହଟା ମାଡ଼ ଖାଇ ନାରୀ ପରି ଓଠି ସୃଷ୍ଟିହିଏ, ସେ ହୁଏ ଅତି ମାନବର ଲୋକ ।

http://oaob.nitrkl.ac.in

ପ୍ରତିଷ୍ଠାବାନ୍ ଲୋକେ ସବୁବେଳେ ଏଇ ପନ୍ଥି ଓ ଜନ୍ତୁରଖାଳଙ୍କର ଚଳେ। କାଳେ ପ୍ରତିଷ୍ଠା ଊଣା ହୋଇଯିବ ବୋଲି ସ୍ତ୍ରୀ ବାଳକ ମିଶି ଦିନରାତି ପ୍ରତିଷ୍ଠାର ଗୁଣ କୀର୍ତ୍ତନ କରୁଥାନ୍ତି।

ଦିନକୁ ଦିନ ଆଗେଇ ଚାଲିଲା ନାଣ୍ଡି ଘରଛାଡ଼ି ପ୍ରାୟ କୁଆଡ଼େ ଯାଏ ନାହିଁ। ଯାଁ ଧପଡ଼ କରିବାପାଇଁ ବେଳେବେଳେ ବାହାର ନ ହେଲେ ସେ ପିଣ୍ଡାରେ ଶୋଇ-ଥାଏ—ଆଗରେ ମାତୃତ୍ୱର ସ୍ୱର ଓହ୍ଲାଇ ଆସୁଛି।

ନାଣ୍ଡି କେଉଁଠି ପୋଃଷି ହେବ ? ଯାହାର କୁକୁରର ଛୁଆଙ୍କୁ ନାଣ୍ଡି ପେଟରେ ଧରିଛି ସେ ନିଜଘରେ ଇଟା ଦେଇ ଟିଣ ପକାଇ ପୋଃଷି ଘର କରିଦେଲେ।

ନାଣ୍ଡି ଯାଇ ମଝିରେ ମଝିରେ ଦେଖେ।

ଦିନେ ସେ ଛୁଆ ଜନ୍ମ କଲା—ଅଢ଼େଇ ଦିନ ଦେଖା ଦେଲା ନାହିଁ। ନାଣ୍ଡି ଛୁଆ ଜନ୍ମ କଲାଣି।

ସେଇ ଘରେ ସେ ଛୁଆ କଲା—ଦି ହପ୍ତା ଯାଏ ପିଲାଙ୍କର ଆଖି ଫିଟି ନ ଥିଲା। ନାଣ୍ଡି ସକାଳେ ଚାଲି ଆସେ ଖାଇବା ପାଇଁ—ଖାଉଥାଏ ଓ ସେହି ଘରକୁ ସେ ଆଖି ରଖିଥାଏ। ତାହାର ଶ୍ରେଷ୍ଠ ପରିବାର ସେଠି ରହିଛି। ସେ ପୁଣି ଥରେ ମାଆ ହୋଇଛି।

ତାହାର ଅଠଟି ଭିତରୁ ଛଅଟି ତଟକା ଜଣା ପଡ଼େ। ଆଉ ଗୋଟିଏ ନିକମା ଛୁଆ ସାତ।

ଈଶ୍ୱର ଏମିତି ଶକ୍ତି ଦେଇଛନ୍ତି ଅବଶ୍ୟ ଦି'ଚାରୋଟି ମରିବେ—ଖାଇବା ଅଭାବରୁ।

ଦିନେ ନାଣ୍ଡି ରାତି ଅଧରେ ଦାନ୍ତରେ କାମୁଡ଼ି ତାହାର ଛୁଆଙ୍କୁ ନେଇ ଆସିଲା।

—ଦେଖ ମ। କେମିତିକା କୁକୁରଟାଏ। ଆମେ ଏତେ ଯତ୍ନ କରି ତା'ପାଇଁ ଘର କଲୁ। ସେ ତାହାର ସବୁ ଛୁଆଙ୍କୁ ନେଇ ଚାଲିଗଲା।

ଆଣିଛି ସମସ୍ତଙ୍କୁ। ଆଉ ତାକୁ ସେଇ ଘର ଛାଡ଼ି ଯିବାର ଦରକାର ପଡ଼ିବ ନାହିଁ। ନାଣ୍ଡି ଆନନ୍ଦରେ ଥାଏ—ଖାଏ ଓ ଛୁଆଙ୍କ ପାଖରେ ଦିନ ରାତି ରହୁଥାଏ।

ମା ଓ ପିଲାଙ୍କର ସମସ୍ୟାର ସମାଧାନ ହୋଇଗଲା। ରହିବା ସୁବିଧା ହୋଇ-ଗଲା। ଏଣେ ଘର ନାହିଁ। ସେପେଇ ଘର ନାହିଁ। ସେ ଘରର ପୋଷା କୁକୁର ସେ ହୋଇ ପାରି ନାହିଁ।

http://oaob.nitrkl.ac.in

ମଝିରେ ମଝିରେ ନାଣ୍ଟି ଘର ଭିତରେ ପଶି ଆଉ ପାଖକୁ ବାହାରିଯାଏ । ସେତେବେଳେ ପାଟି ହୁଏ—କୁକୁର ଘର ଭିତରକୁ ଆସୁଛି । ଏଇ ଛୁଆମାନେ ଆଉ ଘର ଛାଡ଼ିବେ ନାହିଁ ।

ଘର ଭିତରଟା ନାଣ୍ଟିକୁ ବାରଣ—କାରଣ ସେ ପଟ୍ଟିକ ଜର୍ମ୍ମିର ନେଇ ନାହିଁ । ଦାସତ୍ୱର ଲକେଟ ନ ଥିଲେ କାହାରିକୁ ପାଖକୁ ଅଣାଯାଏ ନାହିଁ ।

ନାଣ୍ଟି ସେଇ ଘରକୁ କେତେ ଆପଣାର କରି ନେଇଥିଲା—ସିଏ ହେଲାଣି ଅତୀତ କଥା । ଅତିତରେ ଭଲିଆ କର୍ମଗୁଣୀ ତାହାର ଉପରବାଲାର ଇଜ୍ଜତକୁ ପ୍ରାଣ ପଣ କରି ବଞ୍ଚାଇଲା ପରି । ନାଣ୍ଟି କଥା ମନେପଡ଼େ ନାହିଁ । ସେ ଗୋଟାଏ କୁକୁର—ଏତିକି ତାହାର ପରିଚୟ ।

ସବୁ ମଣିଷଙ୍କ ତଳେ କୁକୁର । କୁକୁରର ଗୁଣ ହେଉଛି କାହାଣୀର ସରଞ୍ଜାମ ।

ହଠାତ୍ ଖବର ଆସିଲା ଯେ ତହିଁ ଆର ଦିନ ସକାଳେ କୁକୁରମରା ଜିପ୍ ଆସିବ । ଲକ୍ଷେ ଖଣ୍ଡ ମାଂସ ତିଆରିରେ କେତେ ପଇସା ଲାଗେ ସେତିକି ମ୍ୟୁନିସିପାଲିଟିର ଗୁପ୍ତ ରେକର୍ଡ଼ ରହେ । କୁକୁର ମରା ହେଉଛି ଅନେକ ଲୋକଙ୍କର ରୋଜଗାରର ବାଟ ।

ତେଣୁ ସହରର କୁକୁର ସେମିତି ରହନ୍ତି । ନିଜର ଦୁର୍ଭାଗ୍ୟକୁ ଏଠିସେଠି ବୁଲାଏ ।

ହଠାତ୍ ବିପଦର ମେଘ ଉଭି ଆସିଲା । ଏଇ ନାଣ୍ଟି ତ ନେକଲେଟ୍ ନେଇ ନାହିଁ । କିଏ ଜାଣେ ମ୍ୟାନଲଡକାର ସାଙ୍ଗ ଘର ଛାଡ଼ି ରାସ୍ତାକୁ ଓହ୍ଲାଇ ଯିବ—ସାତଟା ଛୁଆ ତାଙ୍କୁ ବଞ୍ଚାଇବ କିଏ ?

ଭୋରରୁ ସମସ୍ତେ ଉଠି ଜଗି ରହିଲେ ନାଣ୍ଟିକୁ । ସେ ଯେମିତି ଆଖିର ବାହାରକୁ ନ ଯାଏ । ଜିପ୍ ଯିବାର ଶବ୍ଦ ଶୁଣିଲେ ସମସ୍ତେ ବ୍ୟସ୍ତ ହୋଇପଡ଼ନ୍ତି । କିନ୍ତୁ ନାଣ୍ଟି ତାହାର ପିଲାଙ୍କୁ ଦୁଧ ଖୁଆଉ ଥାଏ ।

ଟିକିଏ ବଡ଼ ହୋଇଗଲାରୁ ସେ ସାତଟି ଯାକ ଛୁଆ ଆସି ପକ୍କା ପିଣ୍ଡାରେ ଭିତରେ ରହିଲେ । ମାନେ କୁକୁର—ଯିଏ ଦେଖେ, ବିରକ୍ତ ହୁଏ । ଏତେ ଛୁଆଙ୍କୁ ଚଳେଇବ କେମିତି ?

ତାହାର ଆଗଥର ପାଞ୍ଚଟିଯାକ ଛୁଆ ମରିଯାଇଥିଲେ, ଏଥର ସାତଟି ଯାକ ବଞ୍ଚିଛନ୍ତି । ଈଶ୍ୱର ନାଣ୍ଟିର ମନକୁ ଭରି ଦେଇଛନ୍ତି ଅସୀମ ବାତ୍ସଲ୍ୟରେ ।

ମଣିଷ ଛୁଆ ପରି ସେ ଓକିଲ, ଡାକ୍ତର, କିରାଣି, ପୁଲିସ, ମନ୍ତ୍ରୀ ନ ହୋଇ-ପାରେ କିନ୍ତୁ କୁକୁର ଜୀବନରେ ତାହାର ସାତଟି ଛୁଆ ସାର୍ଥକ ସୃଷ୍ଟି ।

http://oaob.nitrkl.ac.in

ସମସ୍ତେ ଚାହିଁ ରହନ୍ତି ଛୁଆଙ୍କୁ । ଲଦାଲଦି ହୋଇ ସେମାନେ ଏକାଠି ଶୋଇଥାନ୍ତି । ମାଆ ଆସିଲେ ସେମାନେ ଠିଆ ହୋଇଯାନ୍ତି ଦୁଧ ଖାଇବାକୁ । ମାଆର ମଧ୍ୟ ମନରେ କ୍ଳାନ୍ତି ନାହିଁ । କୁକୁର ଛୁଆ ଦୁଧ ଖାଇଲେ ସଂସାରର କ'ଣ ବିଶେଷ ଉନ୍ନତି ହେବ, ଏଇ ବିଚାର ନାରୀର ନ ଥାଏ ।

ଏଇ ନିୟମରେ ପ୍ରାଇମେରୀ ସ୍କୁଲଠାରୁ ବିଶ୍ୱବିଦ୍ୟାଳୟଯାଏ କାମ ଚାଲିଛି । କେଉଁଟି ବଡ଼ ବା ଦରକାରୀ ଏ କଥାର ବିଚାର ନ ହୋଇ ଯାହାକୁ ଯେଉଁ କାମ ମିଳିଛି ତାକୁ ଭଲ ଭାବରେ କରିବା ହେଉଛି ଧର୍ମ । ସବୁ ଧର୍ମ ସମାନ । ପ୍ରତ୍ୟେକ କର୍ମୀ ହେଉଛନ୍ତି ଧାର୍ମିକ । ଏହାକୁ ବଡ଼ ସାନ କରୁଛନ୍ତି ଅଯୋଗ୍ୟ ଇନ୍‌ସପେକ୍ଟର-ମାନେ ।

ମଣିଷ ମାଆମାନେ ଆସି ଚାହିଁ ରହନ୍ତି—ପଶୁ ଜନ୍ତୁଙ୍କର ଭଲ । ତାଙ୍କର ଦୁଧ ଖାଇଲେ ସ୍ତନ ସାଇଜ ହରାଏ ନାହିଁ । କିନ୍ତୁ ମଣିଷଙ୍କର ଦୁଧ ଖାଇଲେ ସ୍ତନ କୁଚୁପୁଚୁ ହୋଇଯାଏ—ସୌନ୍ଦର୍ଯ୍ୟ ଊଣା ହୁଏ ।

ଯୌବନ ଥାଉ କି ନ ଥାଉ, ସ୍ତନର ସୌନ୍ଦର୍ଯ୍ୟ ହରାଇବାକୁ କୌଣସି ଯୁବତୀ ବା ପ୍ରୌଢ଼ା ଚାହେଁ ନାହିଁ । ସେହିମାନେ ଆସି ନାରୀକୁ ଲକ୍ଷ୍ୟ କରନ୍ତି ତାହାର ସ୍ତନର ସୌନ୍ଦର୍ଯ୍ୟ ହରାଉଛି କି ନାହିଁ ।

ସେଥିପାଇଁ ନାରୀର ଛୁଆଙ୍କ ପାଖରେ ସବୁବେଳେ ମଣିଷ ରହନ୍ତି । ଗୁଣ୍ଡ ଦୁଧ ଡିବାରେ ଆଇନ ହୋଇ ଲେଖା ହୋଇଛି ମାଆ ଦୁଧ ପିଲା ପାଇଁ ଉପକାରୀ ।

ଓଃ, ଭାରି ଦରଦ ! ଏବେ ସ୍ତନ ତାହାର ସୌଷ୍ଠବ, ସୌନ୍ଦର୍ଯ୍ୟ ହରାଇବ । ପିଲା ବଡ଼ ହେଲେ କ'ଣ ଦେଖି ମାଆର ରୂପ ଲାବଣ୍ୟ କଥା ଭାବିବ । ସରକାର ଆଇନ କରି ହଜାରେ ଲକ୍ଷେ ଦୁଧ ଚୁଆଇବା ମଣିଷଙ୍କୁ ଚାକିରି ଦେଲେ ସବୁ ସମାଧାନ ହୁଅନ୍ତା ।

କି ନାରୀ ପାଇଁ ଏଇ ସମସ୍ୟା ନୁହେଁ । ସେ ଜାଣେ ଯେ ଛୁଆଗୁଡ଼ିକ ତାହାର । ତାଙ୍କୁ ଜିଆଇଁ ରଖିବା ତାର ଧର୍ମ । ପିଲାଙ୍କୁ ବଞ୍ଚାଇବାକୁ ସ୍ତନ ତାହାର ସୌନ୍ଦର୍ଯ୍ୟ ବା ଦେହ ତାର ବଳ ହରାଇଲେ କିଛି ଯାଏ ଆସେ ନାହିଁ । ସେ କଥା ଜୀବନୀ ବା ବା ଇତିହାସକୁ ଯିବ ନାହିଁ ।

ମା'ନେ ଆଉ ସୁଖ ପାଉ ନାହାନ୍ତି ନାରୀର ଏଇ କର୍ତ୍ତବ୍ୟ ପାଳନ କରିବାକୁ । କିନ୍ତୁ ତାଙ୍କର ମାଆ ବୋଲାଇବାର ଗୌରବ ଦରକାର । ନ ହେଲେ ତାଙ୍କର ଜୀବନ ବ୍ୟର୍ଥ ହୋଇଯିବ । ରାତିରେ ନିଦ ପଡ଼ିବ ନାହିଁ । ମନ ବିକୃତ ହୋଇଯିବ ।

http://oaob.nitrkl.ac.in

ନାର୍ଣ୍ଣି ଅସୀମ ଉତ୍ସାହରେ ଯୋଡ଼ାଏ ଓଳୋଟି କୁଆଙ୍କୁ କୋଡ଼ରେ ଧରିଥିଲା ଶୋଇଥାଏ । ପିଲାମାନେ ମାଆଙ୍କୁ ପାଇଲେ ସୁଖୀ । ସେ ଆସ୍ଥା, ଗୃହିଣୀ ସୁବିଧା ପାଏ ନାହିଁ ।

ହେଲେ କୁକୁରଗୁଡ଼ାଏ—ଅସ୍ପୃଶ୍ୟ । ଯେଉଁମାନେ ଉଚ୍ଚରେ ଆଦର୍ଶ ଦେଉଛନ୍ତି ତାଙ୍କୁ ନାକଟ କରିବା ମଣିଷର ଅଭ୍ୟାସ । ଓଡ଼ିଆଙ୍କୁ ଅଣଓଡ଼ିଆଙ୍କ ପାଖରେ ନାକସିଆ କରିବା ହେଲା ଓଡ଼ିଆର ଫେସନ୍ ।

ଆମ ନାର୍ଣ୍ଣିକୁ ଓ ତାହାର ପିଲାମାନଙ୍କୁ ରେଡ୍‌ମାର୍କ ଦେବା ଆମର ଘରର ଫେସନ । ଏବେ ଓଡ଼ିଆ ସମାଜରେ ଅନେକ ବାବୁ ଅଛି ତାଙ୍କର ଅଣଓଡ଼ିଆ ବୋହୂଙ୍କ କଥା ଶୁଣାଉଛନ୍ତି—ଏପରି ଆଦର୍ଶ କେଉଁଠି ନାହିଁ ।

ଓଡ଼ିଶା ଭିତରକୁ ଅଣଓଡ଼ିଆ ଆସୁଛି । ଯିଏ ଭଲ ଚାକିରି ପାଇଲା ସେ ଧରା ପଡ଼ିଲା ଜାଲରେ । ଏହାର କାରଣ ହେଲା ଓଡ଼ିଆ ଲୋକ କେବେହେଲେ ତାହାର ବାପମାଙ୍କ ପ୍ରତି ନମକହରାମ ନୁହେ । ଏଣେ ବାବୁମାନେ ଖବରକାଗଜ ଅଫିସକୁ ଯାଇ ଓଡ଼ିଶା ଓଡ଼ିଆଙ୍କ ପାଇଁ ରାବ ଦେଉଥିବେ ।

ସମାଜ ସମ୍ପାଦକ ଡକ୍ଟର ରାଧାନାଥ ରଥ ବହୁତ ଚେଷ୍ଟା କଲେ ଓଡ଼ିଶା ଓଡ଼ିଆଙ୍କ ପାଇଁ କରିବାକୁ । ସବୁ ସୁବିଧା ଓଡ଼ିଆ ପାଆନ୍ତୁ । ଏଥିରେ କିଛି ହାଡ଼ଥଣ୍ଡା କଥା ବି ମିଶିଲା—କାରଣ ବାବୁମାନେ ଉପରକୁ ଯିବେ, ଯୋଗ୍ୟତା ଥାଉ କି ନ ଥାଉ । ଏଣେ ବୋହୂମାନେ ଲିପିଷ୍ଟିକ୍ ମାରି ଇନ୍-ଲଅମାନଙ୍କୁ ସାର୍ଟିଫିକେଟ୍ ଦେଉଛନ୍ତି । କିମ୍ବା ନିଜର ଧର୍ମବରଙ୍କୁ ବଚନିକା ଶୁଣାଉଛନ୍ତି—କ୍ୟା ତୁମ୍ ମରଦ ହାୟ ନାହିଁ ? ଅଗର କମ୍‌ଜୋର ନେହି ହାୟ ତୋ...

ନାର୍ଣ୍ଣିର ପରିବାର ଆଗରେ ଏହି ଓଡ଼ିଆ ଧନୁର୍ଦ୍ଧରମାନଙ୍କୁ ଗ୍ଲେଟକରି ଦେଖିବା କଥା । ଯେମାନଙ୍କର ରୁଚି ନାର୍ଣ୍ଣିର ରୁଚିଠାରୁ ତଳେ । ସେଇ ମଣିଷଗୁଡ଼ାଙ୍କ କୁକୁରଠାରୁ ତଳେ । କେବଳ ଭଲ ଲୁଗା, ଯୋତା ପିନ୍ଧି ନିଜକୁ ତାରିଫ୍ କରୁଛନ୍ତି ।

—କ'ଣ କରିବ ଏତେଗୁଡ଼ାଏ କୁକୁରଙ୍କୁ ?

—କିଏ ଜାଣେ ? ଈଶ୍ୱର ପଠାଉଛନ୍ତି । କେତେ ମରିବେ । କେତେ ରହିଯିବେ । ଯିଏ ରହିବେ ଘର ଜଗିବେ ।

—କ'ଣ ଅଛି ଏତେ ମାଲ ?

—ସେ କଥା କିଏ ଜାଣେ ? ରାତି ଅନ୍ଧେ ତ' ପଡ଼ିଛି । ତାଙ୍କ କାଠ ଦି'ଖଣ୍ଡ, ପଚିଶ ଦି' ଟେକା ଅଛି ତ । ନାର୍ଣ୍ଣିର ପିଲାମାନେ ତାକୁ ଜଗିବେ । କିଏ ଆସିଲେ ଭୁକାଭୁକି କରି ଆମକୁ ଜଣାଇବେ ।

http://oaob.nitrkl.ac.in

କୁକୁରମାନଙ୍କର ମାନ ବଢାଇବାକୁ ଟିଣରେ ଧଳା କଳାରେ ଲେଖାହେଲା—କୁକୁରରୁ ସାବଧାନ ।

ହଠାତ୍ ଲୋକ ପଶିଆସିବ କାହିଁକ ? ଆମେ ଛୁଆ ଲେଙ୍ଗଡ଼ା ପିନ୍ଧୁଛୁ । ଯେ ଲୋକ ଦେଖିବ କାହିଁକ ? ଏହାଛଡା ନାର୍ଣ୍ଣିର ପିଲାମାନେ କାମ ପାଇବେ ।

ସଂସାରରେ ଏମିତ କାମ ଗୁଡ଼ାଏ । ଡାକଘରେ ଯିଏ ଲଫାପା ପୋଷ୍ଟକାର୍ଡ ଦିନକୁ ଶହେ ଟଙ୍କାର ବିକେ ସେ ମାସକୁ ଆଠଶହ ଟଙ୍କା ଦରମା ପାଏ । ଯିଏ ଆଠ ଘଣ୍ଟାରେ ବାରଘଣ୍ଟା ଦୌଡ଼ଝାପ ଝାଡୁ ମାରେ ସେ ବି ପାଏ ପାଞ୍ଚଶହ ଟଙ୍କା ।

ଘରର ମାନ ବଢ଼ିଲାଣି । ଯେମିତକା ଘର ହେଉ, ଯେମିତକା କୁକୁର ହେଉ ନୋଟିସ ଲାଗିଗଲାଣି—କୁକୁର ବିଷୟରେ । ଯିଏ ଭିତରକୁ ଆସିବ ତାକୁ ଏମାନେ ଦାନ୍ତ ବାଇ ଧ୍ୱଂସ କରିଦେବେ ।

ଖାଲି ଭୁକାଭୁକ ଉଚ୍ଚସ୍ତରର ହେଇ ନାହିଁ । କେମିତ ବା ହେବ ? ବାବୁ—ବାବୁଆଣୀ ଓଲୁ । ତାଙ୍କ ପିଲା ବି ଅଧା ଓଲୁ । କୁକୁର କ'ଣ ପ୍ରଫେରେ ହେବ ? ଆଳି, କେନ୍ଦ୍ରାପଡ଼ା, କଟକରେ କ'ଣ ଭଲ ଜସମର ଗ୍ରେର, ତାକୁ ବାହାରୁଛନ୍ତି ? କାହିଁ ମଦ ଗୁଳାଛି—ଖାଲି, ମାନ୍ଧୁରଗ୍ରେଦ ଯଥେଷ୍ଟ ବ୍ୟବହାର ହେଉଛି; କିନ୍ତୁ ଅସଲି ନାମକରା ଆଦମି ବାହାରୁ ନାହାନ୍ତି । ଆମର ନାର୍ଣ୍ଣି କେବେ କେତେ ଉଠିବ ?

ଆମର ଜଜ, ଆଇ. ଏ. ଏସ୍ ଅବ କେତେ ଅବା ଉଠିଲେ । ଦରମା ସମାନ ହେଲା । କିନ୍ତୁ ପେଟଟା ବଢ଼ିଗଲା । ମୁଣ୍ଡ ଭିତର ବ୍ଲେଡ ଧୋଇଗଲା । ହୃଦୟ ଅତି ଓସାରିଆ ହୋଇଗଲା ।

ନାର୍ଣ୍ଣିର ପିଲାମାନେ କାନ୍ଦୁଆ ଓ ଅଳସୁଆ ହେଲେ । ବହୁତ ଯତ୍ନ ମିଳୁଛି । ଟିଉସନ ମାଷ୍ଟର ପଢାଉଛି । ଶିକ୍ଷା ନେଇ କଲେଜକୁ ଯାଉଛି । କଲେଜରୁ ଫେରିଲାବେଳେ ଲୋକ ଅଛନ୍ତି କହିବାକୁ—ଧନରେ, ତୋ ମୁହଁ ଏମିତ ଶୁଖିଗଲା କ'ଣ ପାଇଁ ?

କିଛି ପରବାସ୍ତ ନାହିଁ । ଆମ ପକ୍ଷରେ ଘର ଅଛି । ଜାତ ଅଛି । ଜାତଆଣି ଅଛି । କୁଟିଳ ଖଲବୁଦ୍ଧିର ପ୍ରପଞ୍ଚ ରହିଛି । ଯଦ ପିଲାର ଯୋଗ୍ୟତା ଓ ଜ୍ଞାନ ନ ବଢ଼ିଲା ତାହାହେଲେ ସିଏ ହେଉଛି ଅନ୍ୟମାନଙ୍କର ଦୋଷ ।

ଘରେ ଅଣଓଡ଼ିଆ ବୋହୂ ଆସି ଶୋଇଛି ମୋଟା କଅଁଳ ଗଦି ଉପରେ । କାମ ସେ କରିବ ନାହିଁ । ଅନ୍ୟମାନେ ତାହାପାଇଁ ଖଟିବେ । ସେ ଖାଲି ବିଛଣାରେ ଗଡ଼ିବ ଦିନରେ ଓ ରାତିରେ । ବେଶି ବିରକ୍ତ ଲାଗିଲେ ଟିକିଏ ସିଇ ସଫର୍ କରିବାକୁ ଯିବ । ଓଡ଼ିଆ ବର ଆପଣାକୁ ତାରିଫ୍ କରୁଥିବ—ନିଜର ସ୍ତ୍ରୀ' ପିଲାଙ୍କର ଅଶେଷ ବିଶେଷ ଗୁଣାବଳୀ ଖୋଜି ପାଇଲା ପରି ।

http://oaob.nitrkl.ac.in

ନାଣ୍ଡିର ଛୁଆଙ୍କ ପାଇଁ ଦିନକୁ ପାଞ୍ଚଟଙ୍କା ଖର୍ଚ୍ଚ ହେଉଛି । ସେମାନେ ଟିକିଏ ସଉଖିନିଆ । ଦୁଧ ଦରକାର । ରୁଟି ଦରକାର । ଆମିଷ ଦରକାର ।

ମାସକୁ ଦେଢ଼ଶହ ଟଙ୍କା । ଏଣେ ଖର୍ଚ୍ଚକୁ ଅଭାବ । କୁକୁରମାନେ ଚଳିବେ କେମିତି ?

ବାଘରେ ବିରକ୍ତ ହେବାକୁ ପଡ଼େ ଇନ୍ଦିରା ସରକାର ବିରୁଦ୍ଧରେ । ପାଞ୍ଚ ସାତଟା ଛୁଆଙ୍କୁ ଆମେ ଖୁଆଇ ବଞ୍ଚାଇ ପାରିବୁ ନାହିଁ । ତେବେ ଏଇ ସରକାର ରହିବ କାହିଁକି ? ଯାହା ତ ହେଲା ହଠାତ୍ ଜାନକୀ ବାବୁଙ୍କୁ ବାହାର କାହିଁକି କରିଦିଆ ହେଉ ନାହିଁ ?

କୁକୁର ଚଳି ନ ପାରିଲେ ସରକାର ହେବେ ଦୋଷୀ । ସେ ଦୋଷୀ ହୁଅନ୍ତି ପେଟ୍ରୋଲ ଦାମ୍ ବଢ଼ିଲେ, ରେଲ ଟିକେଟ ବଢ଼ିଲେ, ଅବା ଡାକମାଶୁଲ ବଢ଼ିଲେ । ସମସ୍ତେ ଚାହୁଁଛନ୍ତି ଯାହା ପାଉଛନ୍ତି ସେତକ ହାତ ନ ଲଗାଇ ଘରେ ଥୋଇବେ ଓ ପାଇଲାବେଳେ ସବୁପ୍ରକାରର ଆନ୍ଦୋଳନ କରି ଦରମା ବଢ଼ାଇବେ ।

ରାଜନୈତିକ ଦଳ ଏଥିରେ ସହଯୋଗୀ ନ ହେଲେ ଆମେ ବିଗିଡ଼ିଯିବା ତାଙ୍କ ଉପରେ । ଆମର ଭଲ ପାଇଁ ଯେଉଁ ସରକାର ଭାବୁ ନାହିଁ ସେ ଆମର ଶତ୍ରୁ ।

ଏମିତି ଚାହୁଁଛି ସରକାର—କେବଳ ରାସକେଲ୍ ପରି କୁକୁର ସମାଜର ହେପାଜତ ପାଇଁ । ସେଇ କୁକୁର ଭୁକନ୍ତି—ଏକାଠି ଆକାଶ କମ୍ପାନ୍ତି ନିଜର ମାଲିକର ଭଲ ପାଇଁ ।

ମାଲିକର ଭଲ ହେଉଛି ନିଜର ଭଲ ।

ମାସକୁ ଆଠଦିନ କାମ କରିବା ଅଫିସର ମିଳୁ ନାହାନ୍ତି । ସେମାନେ କହୁଛନ୍ତି ଭାରତର ବିଭିନ୍ନ ଅଞ୍ଚଳକୁ ଯାଇ କାରିଗରି ଓ ଚାକିରି କୌଶଳ ଶିଖିବେ । ଏଣେ ଚାକିରି ସେମିତି ରଖା ହୋଇଥିବ । ଦରମା ଘରକୁ ଆସୁଥିବ । ଦେଶଭ୍ରମଣ ଦରକାର ବୋଲି ଦସ୍ତରଖାନା କାଗଜରେ ଲେଖା ହୋଇଥିବ ।

ବିଶ୍ୱବିଦ୍ୟାଳୟର ଅଧ୍ୟାପକମାନେ ପ୍ରଶ୍ନ କରିବାକୁ, ଖାତା ଦେଖିବାକୁ, ପରୀକ୍ଷା ଚଳାଇବାକୁ ଓ ବିଭିନ୍ନ କମିଟିରେ ଯାଇ ଜ୍ଞାନ ଦେବାକୁ ବର୍ଷସାରା ବୁଲୁଛନ୍ତି । ଏଣେ ଦିନକୁ ଶହେଟଙ୍କା ତାଙ୍କୁ ମିଳୁଛି ଜ୍ଞାନ ପାଇଁ ।

ଜ୍ଞାନର ସୂଚନା ଅଳ୍ପ । ଚାକିରିରୁ ଛୁଟି ହୋଇଗଲେ ଜଣାପଡ଼େ ଏହି ଜ୍ଞାନୀମାନଙ୍କର କଦର ତାଙ୍କର ନିଜର ଭିଟାମାଟିରେ ବି ନାହିଁ । ଏଣୁ ତେଣୁ ହୋଇ ଦିନ କଟାଇଥାନ୍ତି ।

http://oaob.nitrkl.ac.in

ସାରା ଦେଶରେ ନୌକରସାହୀ ଆଇନକୁ ଆଖି ମିଟିକା ମାରି ଯେମିତି ଲୁଣ୍ଠନ ଓ ଶୋଷଣ ଚଳାଇ ରଖିଛି ତାହାର ବିଚାର ଏଠି ନାହିଁ । ଏମାନଙ୍କୁ ଜଗିବା ପାଇଁ ଶିକ୍ଷିତ କୁକୁରର ଦଳ ଦରକାର । ଘାସି କୁକୁର ନାଣ୍ଡି ମଧ୍ୟ ଯଥେଷ୍ଟ । ତାହାର ଅଲେଡ଼ା ପିଲାମାନେ ମଧ୍ୟ ଯଥେଷ୍ଟ ।

ଗୋଟିଏ କୁକୁର ବି ବାହାରୁ ନାହିଁ । ଖାଲି କୁକୁରଙ୍କ ବିପ୍ଳବରେ ବକ୍ତୃତା ଚାଲୁଛି ଚାରିଆଡ଼େ—ଏଇ ସ୍ୱାଧୀନତା ରଖ । ଆଉ ରଖିବ କିଏ ? ରଖିବା ଲୋକ ସକାଳୁ ରାତି ଅଧଯାଏ ଖାଇବାରେ ଲାଗିଯାଇଛନ୍ତି ।

ଦେଶରେ ଖାଦ୍ୟହୀନ ଅସଂଖ୍ୟ ଲୋକ ସକାଳୁ ସନ୍ଧ୍ୟାଯାଏ ଈଶ୍ୱରଙ୍କୁ ଡାକୁଛନ୍ତି—ମୁକ୍ତି-ପାଇଁ । ସରକାରୀ ଓ ବେସରକାରୀ ନୌକର ଦିନର ଆଲୁଅରେ ଲୁଟିକରି ନେଇ-ଯାଉଛନ୍ତି । ଏଣେ ଦୋଷ ଲଦି ଦେଉଛନ୍ତି ଅନ୍ୟମାନଙ୍କ ଉପରେ ।

ବାଟମାରଣା ପାଇଁ ଦଣ୍ଡ ରହିଛି । ବିଶ୍ୱାସଘାତକତା ପାଇଁ ଦଣ୍ଡ ରହିଛି । କିନ୍ତୁ ଉପରୁ ତଳ ଯାଏ ମଣିଷମାନେ ଛନ୍ନଛଡ଼ା ହୋଇ ପୋଟଙ୍ଗର ଦଳ ପରି ଭିଡ଼ି ଧରିଛନ୍ତି ଦେଶକୁ ।

ଏବେ ସବୁଠାରୁ ଲାଭଜନକ ବାଟ ହେଲା ଗୁରୁଗିରି । ତିରିଶି ବର୍ଷରେ ଉନ୍ନ ପୁରୁଷ ପାଇଁ ସସ୍ତା କରିଦେଇ ଈଶ୍ୱର ଭଜନ କରିବା ବ୍ୟବସ୍ଥା ରଖା ହେଉଛି ।

ରାସ୍କେଲ୍ ର ଲାଙ୍ଗୁଡ଼ ହଲାପରି ଏମାନଙ୍କର କାରବାର ଗୋଟାଏ ପ୍ରକାରର—ଏମାନଙ୍କର ଯୋଗ୍ୟତା ହେଲା ବିଶ୍ୱାସଘାତକତା । ଯେଉଁ ଖାଇଥାଳି ମିଳିଛି ତା'ରି ପ୍ରତି ବିଶ୍ୱାସଘାତକତା କରିବା ।

ସ୍ୱାଧୀନ ଭାରତର ନୌକରସାହୀ ଦେଖାଇ ଦେଇଛି ଯେ ମଣିଷର ଆତ୍ମା ନାହିଁ କିମ୍ବା ବିବେକ ନାହିଁ । ଏମାନଙ୍କର ବେଶପୋଷାକ ହେଉଛି ଏମାନଙ୍କର ଚିହ୍ନ ।

କାହାରି ମନରେ ଅନୁତାପ ନାହିଁ । ସମସ୍ତେ ଚାହୁଁଛନ୍ତି ନିଶ୍ଚୟ କରି ତାଙ୍କର ପିଲାଙ୍କୁ ନୌକରସାହୀରେ ସାମିଲ କରିଦେଇଯିବେ । କିନ୍ତୁ ଉପରେ ଧର୍ମ ଦେଖୁଛି—ଏଥିରେ ସନ୍ଦେହ ନାହିଁ । ସେଇ ଧର୍ମର ବଳରେ ନୌକରସାହୀ ପିଲା ତାଙ୍କର ପୂର୍ବାର୍ଜିତ ନୌକରୀକୁ ଘୃଣା କରୁଛନ୍ତି ।

ଏମାନଙ୍କ କାରବାର ତୁଳନାରେ ରାସ୍କେଲ୍ ଭଲ ।

ରାସ୍କେଲ୍ ବଞ୍ଚିରହିବା ଦରକାର ଯେତେ ଶ୍ରେଷ୍ଠ ହେଉ ପଛକେ ରାଜନୈତିକ ଦଳ ବଞ୍ଚି ରହିବା ଦରକାର । ଯେତେ ଅଳ୍ପ ପରିସର ହେଉ ପଛକେ ଖବରକାଗଜ ବଞ୍ଚିବା ଦରକାର । ଏମାନଙ୍କର ଆଘାତ ନିର୍ଦ୍ଦିଷ୍ଟରେ ଅଳ୍ପଦୂର ଯିବ—କିନ୍ତୁ ଏମାନେ ରହିବା ଦରକାର ।

http://oaob.nitrkl.ac.in

ଶାସନ ଯନ୍ତ୍ର ରାଜନୈତିକ ଦଳ ହାତରେ ନ ଆସନ୍ତା ତାହାହେଲେ ଏହି ନୌକର ସାହି ଅଜଗର ପରି ପ୍ରକାଣ୍ଡ ହୋଇଯାଆନ୍ତେ‌ଣି । ନେତାମାନେ ଏହି ନୌକରସାହି ତାଙ୍କର ଫାନ୍ଦାରେ ରଖିଛନ୍ତି ।

ରାଜନୈତିକ ଦଳ ତାଙ୍କର ସଭା ସମିତରେ ପାଣି ଗିଲାସ ଅଣିବାକୁ ଓ ଷ୍ଟେଟ-ମୋଟ ହୁକୁମ ତାଲିମ କରାଇବାକୁ ନୌକରସାହି ଜିଲ୍ଲା ଅଧିକାରୀଙ୍କୁ ବରାଦ ରଖନ୍ତି—ଖାଲି ତାଙ୍କୁ ମନେପକାଇ ଦେବାକୁ ଯେ ସେମାନେ ଚାକର ।

ଯେତେ ହସିଲା ମୁହଁ ଦେଖାଇବାର ଛଳନା କଲେ ମଧ୍ୟ ନୌକରସାହିଙ୍କୁ ତାଙ୍କର ସ୍ଥାନରେ ରଖାଇଛନ୍ତି ବଳିଷ୍ଠ ରାଜନୈତିକ ଦଳର ନେତା । ଦର୍ପଦମନ ଦେଇ ଓଡ଼ିଶା ଶାସନରେ ଡକ୍ଟର ହରେକୃଷ୍ଣ ମହତାବ ଅସଂଖ୍ୟ ନୌକରସାହି ଲୋକଙ୍କୁ ମନେରଖାଇ ଦେଇଛନ୍ତି ଯେ ସେମାନେ ନୌକର ।

ସେଥିପାଇଁ ରାଜଧାନୀରେ ଗୋଟିଏ ଶ୍ରେଣୀ ବଡ଼ ତେଜୀୟାନ୍—ସିଏ ହେଲା କୁକୁର ଦଳ । ପ୍ରତ୍ୟେକ ନୌକର ଗୋଟିଏ ଗୋଟିଏ କୁକୁର ରଖେ ଘରକଣରେ ଥିବାଯାଏ । ତା'ପରେ ତାହାର ନୌକରୀ ଚାଲିଯାଏ—କୁକୁର ବ ଛୁଟି ନେଇଯାଏ ।

ଅବସରପ୍ରାପ୍ତ ସରକାରୀ କର୍ମଚାରୀଙ୍କର କୁକୁର ରହେ ନାହିଁ । ଅବସର ପାଇବା ପୂର୍ବରୁ କୁକୁର ନର୍ଦ୍ଦିଷ୍ଟରେ ରହିବ—ଶତ୍ରୁଙ୍କୁ ଠାବ କରିବାପାଇଁ ।

ଡକ୍ଟର ମହତାବ ପୋଷିଥିଲେ ଅସଂଖ୍ୟ କୁକୁର । ଯିଏ ତାଙ୍କର କୁକୁର ହେବାର ସୌଭାଗ୍ୟ ପାଇ ନ ଥିଲା ତାହାର ଭାଗ୍ୟରବି ଅସ୍ତ ଯାଇଥିଲେ । ସଦାରଣ୍ଟା ବଞ୍ଚିରହିବା ପାଇଁ କୁକୁର ହେବା ଦରକାର—ହ' ଗୋଡ଼ିଆ ଓ ଚାରିଗୋଡ଼ିଆ କୁକୁରଙ୍କର ଆକୃତି ଅଲଗା । କିନ୍ତୁ ଫଳ ସମାନ ।

ମଣିଷ ଯେ ମଣିଷ ହୋଇ ରହିବାକୁ ଇଚ୍ଛା କରେ—ଏଏ ଏକ ଭୁଲ୍ କଥା । ନିଜର ଇଚ୍ଛାରେ ବା ବାଧ୍ୟରେ ପଡ଼ି ବାରଅଣା, ଚଉଦଅଣା, ପନ୍ଦର ଅଣା କୁକୁର ହେବାକୁ ଚାହାନ୍ତି । ଏହାକୁ କୁହାଯାଏ ପୁରୁଷକାର ।

ନିଜକୁ ନିଜପାଇଁ ବନ୍ଦୋବସ୍ତ କରି ପେଟ ପୋଷିବା ବଡ଼ ଅଡ଼ୁଆ କଥା । ଏଥିରେ ହୁଏ ବନବାସ, ଦୁଃଖ ଓ ଅନୁଶୋଚନା । କିନ୍ତୁ ଜଣକର, ହୋଇଗଲେ ସବୁ ଅଡ଼ୁ ଛୁଟି ।

ରାସକେଲ୍ ଆସି ସେଇ ଅବସ୍ଥାରେ ପହଞ୍ଚିଥିଲା । ସେ ନିଜର ଆନୁଗତ୍ୟ ଦେଖାଇ ନିଜର ଦଖଲ ଜାହିର କରିଛି । ତାହାର ଭଲମନ୍ଦ ଏବେ ସାର୍ ପରିବାରର ହାତରେ । ସେ କେମିତି ଭଲରେ ରହିବ—ଇଏ ହେଲା ମଣିଷର ଶୁଭକାମନା ।

http://oaob.nitrkl.ac.in

ଝିଲେ ବ ଗ୍ରସକେଲ୍ ସେତେ ଭଲ ରହୁ ନ ଥାଏ । ତାହାର ନାକ ଦେଖିଲେ ଅଧା ଶୁଖିଲା ଦଶେ । ଦେହ ଭଲ ନାହିଁ । ତଥାପି ସେ ଡିଆଁ କୁଦା କରେ । ସେ ଯେତେ ଖୁସି ହୁଏ ତହିଁରୁ ଅଧିକ ହୁଅନ୍ତ ସମସ୍ତେ ।

ଆଉ ଗ୍ରଗ୍ରେଟି କୁଆଙ୍କ ଭିତରେ ସେ ଆଗେଇ ଯାଇଛି । ଅନ୍ୟମାନେ ମାମୁଲି ବ୍ୟବହାର ପାଆନ୍ତି—ଗ୍ରସକେଲ୍ ପାଏ ରାଜଭୋଗ ।

ତାହାର ପାଇଁ ମାଂସ ଆସେ । ସେଥିରୁ ଅନ୍ୟମାନେ ଭାଗ ପାଆନ୍ତି । ଗ୍ରସକେଲ୍ କାହାରିକୁ ଛୁଆଇ ଦିଏ ନାହିଁ । ନିଜର ଭାଗ ଛାଡ଼ି ସେ ଝେପିଯାଏ ଅନ୍ୟମାନଙ୍କର ଭାଗ ଆଡେ । ପୁଣି ଆସି ନିଜର ଭାଗକୁ ଖାଏ ।

କାହାର ଆପତ୍ତି ନ ଥାଏ । ସମସ୍ତେ ଆଡେଇ ହୋଇ ଯା'ନ୍ତି । ମାଲିକର ପ୍ରିୟ କୁକୁରର ହାକିମି ମଧ୍ୟ ସେଇ ମାଲିକ ସ୍ତରର ।

ପ୍ରତିଦିନ ଗ୍ରସକେଲ୍‌କୁ ପରଖିବା ଦରକାର ପଡ଼େ—ତାହାର ଦେହ କେମିତି ଅଛି ।

ଝରେ ଦିନ ମାଡ଼ି ଆସୁଥାଏ । ଆସିଥିଲା ବାଲିଯାତ୍ରାକୁ—ପଣା ସଂକ୍ରାନ୍ତି ହେଲାଣି ।

ଗ୍ରସକେଲ୍ ରାଧୁଥାଏ ପ୍ରତିଦିନ । ତାହାର ଇଚ୍ଛା ଅନୁସାରେ ଚଳେ ।

ଗରମ ପାଇଁ ବୋଧହୁଏ ସେ ଦିନେ କାଉଦା ହୋଇଗଲା । ପଡ଼ି ରହେ—ହୁଏ ତ ଗରମ ପାଇଁ ଏମିତି ଥରକୁ ଥର ସେ କାଁ ବ ପର ପଡ଼ିରହେ । ଏହାକୁ ମିଶାଇ ତିନି ଚାରିଥର ହେଲାଣି ।

ଗ୍ରସକେଲ୍ ଆଉ ଫୁର୍ତ୍ତି ହେଲା ନାହିଁ । ଡାକ୍ତରଖାନାକୁ ପଠାଇ ଲାଭ ନାହିଁ । ଏମିତି ଦେହ ବିଗିଡ଼ିଯାଇ ସକାଡ଼ି ହେଲେ ପଶୁଜନ୍ତୁ ଆପଣା ସ୍ୱୟଂ ସକାଡ଼ି ହୋଇଉଠିବ । ଚିକିତ୍ସା ପାଇଁ ବ୍ୟବସ୍ଥା ଊଣା ହୋଇଗଲା ।

ଦି' ଦିନ ଗଡ଼ିଗଲା ।

ଗ୍ରସକେଲ୍ ଆଉ ଗୁଲଚୁଲ କରେ ନାହିଁ । ଦୁଧ ଦେଲେ ପିଏ—ନ ଦେଲେ ସେ ଆଉ କିଛି ଖାଏ ନାହିଁ । ଦୁଧ ପିଇ—ସେଥିରେ ବ ବଳ ଅଛି ।

ହଠାତ୍ ଦିନେ ଗ୍ରସକେଲ୍ ଚୁଲବୁଲ ଆରମ୍ଭ କରିଦେଲା—ସେ ଏକାବେଳେ ଭଲ ହୋଇଯାଇଛି ।

ଘର ଭିତରେ ଆସି ବୁଲିଲା କାହାର କଥାକୁ ଖାତିର ନାହିଁ । ଇଏ ଆମର ଘର—ଆମେ ଚଳୁଚୁ ନାହିଁ କାହିଁକି ? ନାନ୍ତି ଅଟେ ନାହିଁ—ସେ ପୁରୁଣାକାଳିଆ କୁକୁର । ଡରଯାଇ ସେ ପଦାରେ ରହେ ।

http://oaob.nitrkl.ac.in

ଆଧୁନିକ କୁକୁର ହେଲା ହିପ୍‌ପି । ତାହାର ଜନ୍ମଦାତା ହେଲେ ଚୁଡ଼ିଆ । ମଣିଷ ସମାଜ ଓ ପଶୁ ସମାଜ ଏଇ କ୍ରମରେ ଚାଲିଛି । ଏକ ପୁରୁଷରେ ଚୁଡ଼ିଆ—ଆର ପୁରୁଷଟା ହେଲା ହିପ୍‌ପି ।

ଏଇ ପର୍ଯ୍ୟାୟରେ ଧନ ଦଉଲତ ବଢି ଚାଲିଛି । ଚୁଡ଼ିଆଗିରି ନ କଲେ କୋଠା-ବାଡ଼ି, ମଟର ଆଦି ହୁଏ ନାହିଁ । ତା'ପରେ ଯିଏ ଆସିବ ସେ କ'ଣ ଚୁଡ଼ିଆଗିରି କରିବ ? ସେ ହୋଇଯିବ ଜଣେ ଜେଣ୍ଟଲମ୍ୟାନ୍ ଓ ଟିକିଏ ଉପରକୁ ଗଲେ ହିପ୍‌ପି ।

ହିପ୍‌ପି ହୋଇ ପୂର୍ବପୁରୁଷର ଟାଳକୁହା ଅବା ମାରିଖିଆ ଧନକୁ ଧ୍ୱଂସ କରି-ଦେଲେ ସେ ତ ଆଉ ତା'ର ଚୂଡ଼ିଆଗିରି କରିବ ନାହିଁ । ସେ ହୋଇଯିବ ଦାର୍ଶନିକ—ବଇରାଗୀ—ବୈଷ୍ଣବ । ଏମାନେ ଦଳ ଦଳ ହୋଇ ବୁଲି ବିଭିନ୍ନ ବିଷୟରେ ମନ୍ତବ୍ୟ ଦେଉଛନ୍ତି ।

ପ୍ରଧାନମନ୍ତ୍ରୀଙ୍କର ବୁଦ୍ଧି ନାହିଁ । ମୁଖ୍ୟ ମନ୍ତ୍ରୀଙ୍କର ଅକ୍‌କଲ ନାହିଁ । ବଡ଼ ବଡ଼ ଅଫିସର ହେଲେ ଓଲୁ । ହିପ୍‌ପି ସଭ୍ୟତା ସବୁଦିନେ ଥିଲା—ଚୁଡ଼ିଆଗିରିର ଏଇଟା ହେଲା ଫୁଲ ଫଳ ।

ଆମ ରାସକେଲ୍ ଗୋଟାଏ ହିପ୍‌ପି—ଡର ଭୟ କାହାକୁ ନାହିଁ । ସେ ଯାହା ଯେଉଁଠି ଦେଖେ ସବୁ ତାହାର ଆପଣାର କରି ନିଏ । ସେଠି ଆଇନର ସ୍ଥାନ ନାହିଁ । ପୁରୁଣାକାଳିଆ ମାଆ ବାପା ଇଚ୍ଛା କଲେ ସବୁ ଆଇନ ମାନିପାରନ୍ତି ।

ଘର ଭିତରେ ରାସକେଲ୍ ଆଇନ୍ ଶୃଙ୍ଖଳା ପରିସ୍ଥିତିକୁ ଜଟିଳ କରିଦେଲାଣି । ସେ ଘରର ପ୍ରତ୍ୟେକ ଅଂଶରେ ଶୋଇ ବସି ବୁଲି ତା'କୁ ପବିତ୍ର କରିବାକୁ ଚାହେଁ ।

ରାସକେଲ୍‌ର ମାଲିକ ବାବୁ ମଧ୍ୟ ପଚାଶ ବର୍ଷ ତଳେ ଜେଣ୍ଟଲମ୍ୟାନ୍ ହୋଇ-ଯାଇଥିଲା । ସେଇ ସ୍ତରରେ ରହିବାକୁ ଆପ୍ରାଣ ଚେଷ୍ଟା ଚଳାଇଛି ଟାଳି ମଜାମତ ଦେଇ ଦେଇ । ସାରା ସଂସାର ତାକୁ ଜେଣ୍ଟଲମ୍ୟାନ୍ ଭାବରେ ଗ୍ରହଣ କରିବାକୁ ନାରାଜ । ସେ କିନ୍ତୁ ନଛୋଡ଼ ବନ୍ଧା ।

ବାଧ୍ୟ ହୋଇ କଲଚନାର ଫୁଲକୁ ହାତରେ ଧରି ସେ କଟକର ବିନୋଦବିହାରୀ ବଡ଼ ବଜାରରେ ବୁଲେ । ସେଠି ଦର୍ଶନ ଦେଉଛି—କୁକୁରର ଦର୍ଶନ । ପ୍ରତିଦିନ ବାରଟାରୁ ତିନଟା ଓ ରାତି ଆଠଟାରୁ ଏଗାରଟା ରାସକେଲ୍ ପରି ବସି ରହିବାକୁ ପଡ଼େ—କାଳେ କୁଟି ଖସିବ ଦେଖିବା ପାଇଁ ।

ମଣିଷମାନେ ଭିତର ଚଉକରେ ବସି କୁକୁରଙ୍କୁ ଚାହିଁଥାନ୍ତି—ଆହା, ବିଚରା-ମାନେ ମଣିଷ ହେବାକୁ ଇଚ୍ଛା କରୁଛନ୍ତି । କିନ୍ତୁ କୁକୁର ଅଭ୍ୟାସ ଛାଡ଼ିଲେ ସିନା ମଣିଷ ହେବେ ।

http://oaob.nitrkl.ac.in

ରାସକେଲ୍‌ର କିନ୍ତୁ ଏପରି କିଛି କାମନା ନାହିଁ । ସେ ଜାଣେ ସେ ଗୋଟିଏ କୁକୁର । ସେ ମଣିଷ କି କୁକୁର ଜାଣିବାକୁ ଓକିଲ ପରାମର୍ଶ ଦରକାର କରେ ନାହିଁ । ସେ ଜାଣେ ଯେ ହୃଦୟ ଜୟ କରି ଗୃହସ୍ଥ ହୋଇଯାଇଛି—ଶେଷ ଲକ୍ଷ୍ୟ ବିଶ୍ୱାସ-ଘାତକତା କରିବ । ନ ହେଲେ କୁକୁର କି ଗୃହସ୍ଥ ହେବାର ଲାଭ କ'ଣ ?

କୁକୁର ପାଗଳା ହୁଏ । ପାଗଳା କୁକୁର କାମୁଡ଼ିବା ବଡ଼ଦର ଦୋଷ । ପାଗଳା କୁକୁର ଥରେ ଦାନ୍ତ ବସାଇଲେ ପାଗଳ ହେବା ଛଡ଼ା ଅନ୍ୟ ଉପାୟ ନାହିଁ । କୁକୁରର ମାଲିକ ଦରକାର ହେଲେ ଜୀବନ ମଧ୍ୟ ଦେଇପାରିବ । ତଥାପି କୁକୁର ରହୁଛି— ବଞ୍ଚୁଛି— ଓ ଭେକୁଛି ।

ରାସକେଲ୍ ମଧ୍ୟ ରହୁଛି । ସେ ଭଲ ଭଲ ଜିନିଷ ଖାଉଛି । ଆଦର ପାଉଛି । ସମସ୍ତଙ୍କୁ ବୁଝେଇ ଦେଉଛି ଯେ ଏଇ ସଂସାରରେ ଅନେକ ନିରକ୍ଷର ସୁବିଧାର ଏକ-ଗୁଟିଆ କରିନେଇଛନ୍ତି । ଖାଲି ଗୋଟାଏ କଥା ଦରକାର—ସିଏ ହେଲା ଭକ୍ତି ।

ଭକ୍ତିରେ ଅଳ୍ପ ଅଳ୍ପ ଗୁଳିଲେ ବି ସବୁ କଥା ପୂରା ହୋଇଯିବ । ମାଲିକ ହୋଇଯିବ ଭକ୍ତର ଅଧୀନ । ମାଲିକ ହୋଇଯିବ ରାସକେଲ୍‌ର ଅଧୀନ । ପ୍ରତି ପରିବାର ହେଉଛି ରାସକେଲମାନଙ୍କର ଅଧୀନ ।

ରାସକେଲ୍ ପ୍ରତି ସମ୍ମାନ ବଢେ । ତାହାର ବୁଦ୍ଧି ବିଦ୍ୟା ଓ ସ୍ୱାଧୀନତା ପ୍ରୟାସକୁ ଆମେ ତାରିଫ୍ କରୁ । ବେଳ ଅବେଳରେ ଯାଇ ରାସକେଲ୍‌କୁ ଗେଲ କରି ତାକୁ କହିଦେବାକୁ ହୁଏ ଯେ ସେ ନ ଥିଲେ ଜୀବନ ହେବ ବ୍ୟର୍ଥ ।

ରାସକେଲ୍ ବୁଝୁଥିଲା ସେଇ ପରିବାରଟିକୁ । ଏତେ ସ୍ନେହ ଦେଉଛନ୍ତି ଏମାନେ-ପରେ ବହୁତ ଦୁଃଖ ପାଇବେ । ଯାହାକୁ ଯେତିକି ଦିଆଯିବାର କଥା ତହିଁରୁ ଅଧିକ ଦେଲେ ନିଶ୍ଚିତରେ ଦୁଃଖ ଅଛି । ଅକାତରରେ ସ୍ତ୍ରୀ ପିଲାଙ୍କୁ ସବୁ ଦେଇଦେଲେ ସେମାନେ ବୋତଲେ ନିଦବଡ଼ି ଆଣି ଥୋଇ ଦେଇଯିବେ ।

—କିଛି ତ କରିପାରୁ ନାହିଁ । ନିଜ ପାଇଁ କିଛି ରଖି ନାହିଁ । ଓଲୁ ପରି ସମସ୍ତଙ୍କୁ ସବୁ ଦେଇ ଶୂନ୍ୟ ହୋଇଯାଇଛି । ଏଇ ବୋତଲଟିକୁ ଭଲକରି ପରଖିଲେ ଦେଖିପାରିବ ଯେ ଶୂନ୍ୟତା ପୂର୍ଣ୍ଣତା ପାଇ ସାରିଲାଣି ।

ମଣିଷର ଆତ୍ମହତ୍ୟା ଯୋଗ ଦୁଇ ଦଫାରେ ପଡ଼େ । ପ୍ରଥମଥର ଆସେ ପନ୍ଦରରୁ ପଚିଶି ଭିତରେ । ସେତେବେଳେ ନିଜ ବିଷୟରେ ଯାହା ଧାରଣା ଓ ସଂସାର ତାକୁ ଯେଉଁ ଶ୍ରେଣୀ ଦିଏ—ସେଇ ଓଲମବଲମ ପାଇଁ ଆତ୍ମହତ୍ୟା ହୁଏ ଗୋଟିଏ ସମାଧାନ ପନ୍ଥା । ଅର୍ଥାଭାବ ପାଇଁ ରେଳଗାଡ଼ି, ମହାନଦୀ ଓ ଫସଲର ପୋକମରା ଔଷଧରେ କାମ ଚଳାଇବାକୁ ପଡ଼େ ।

http://oaob.nitrkl.ac.in

ଦ୍ୱିତୀୟ ଥର ସେଇ ଯୋଗ ଆସେ ଷାଠିଏ ପାର ହୋଇଗଲେ । ସେତେବେଳେ ଘରର ସବୁ ସ୍ପେକେଲ୍ ଦଳ ବାନ୍ଧ ସବୁ ଅଟ୍ଟାଳିକାକୁ ବାଉଳା କରିଦେଇ ରହସ୍ୟଗଡ଼ା ଆଖୁ ପରି ଫିଙ୍ଗିଦିଅନ୍ତି । ଯଦି ଉଚିତ ପ୍ରକାରରେ ବଞ୍ଚି ନ ପାରିବ ତେବେ ଧରି ଏଇ ନିଦବଟିକା ବୋତଲକୁ । ସ୍ୱପ୍ନ ଦେଖି ଦେଖୁ ତୁମେ ତୁମର ଉପଯୁକ୍ତ ମୂଲ୍ୟ ପାଇଯିବ । ନୂଆ ଜନ୍ମକୁ ଆଉ ସ୍ପେକେଲ୍ମାନଙ୍କ ସାଙ୍ଗରେ ଘର କରିବ ନାହିଁ ।

—ଯାଅ । ଡାକ୍ତରଙ୍କୁ ଡାକ । ସ୍ପେକେଲ୍ ପୁଣି ଶୋ'ଇ ରହିଲାଣି ।

—ଭଲ ହୋଇଯିବ ନାହିଁ । ତାହାର ଗୋଟିଏ ବୋମାଣି ଅଛି । ପ୍ରତି ମାସରେ ଥରେ ବାହାରୁଛି ।

—ହେଲେ ଚିକିତ୍ସା ଦରକାର । ଯାଉ ପଛେ ଟଙ୍କା । ଆମର ହେଲା ରହିବା କଥା ନୁହେଁ ।

—ଡାକ୍ତର କହିଲେ ଦେଶୀ କୁକୁରଙ୍କର ଚିକିତ୍ସା କ'ଣ ହେବ ?

—ନାହିଁ, ସାର୍ ! ସେ ଦେଶୀ ନୁହେଁ । ଆପଣ କହିଥିଲେ ସେ ଡାଲ୍ମେସିଆନ୍ । ଆଲସେସିଆନ୍ ସାଙ୍ଗରେ ଲଢ଼ିଥିଲା ଏଇ ଡାକ୍ତରଖାନାରେ ।

—ସେ କ'ଣ ପ୍ରତିଦିନ ମାଂସ ଖାଉଛି ?

—ହଁ, ସାର୍ ' ଖାଲି ମାଂସ ନୁହେଁ—ମାଛ ଗେଣ୍ଡା ବି ଖାଏ । ସେଥିରେ ବି ବଳ ହେଉଥିବ ।

—ତୁମେ କୁକୁର ରଖି ଜାଣ ନାହିଁ । କୁକୁରକୁ ରଖି ଜଗି ନ ପାରିଲେ ଡାକ୍ତର କ'ଣ କରିବ ?

—ସାର୍ ଆସନ୍ତୁ, ଥରେ । ଅମ୍ଭେ ଆପଣଙ୍କୁ ଫିସ୍ ଦେବୁ । ସେ ବଡ଼ ବ୍ୟସ୍ତ ହେଉଛି ।

ଆହେ ପିଲା । ତୁମେ ଜାଣ ନାହିଁ ଯେ ଦରଜି ମୁସ୍ତାଫା ସୂତା, ଖଦଡ଼ ଆଦି ବାଜେ କନା ଛୁଏଁ ନାହିଁ । କୁକୁରର ଚିକିତ୍ସା କରିବାକୁ ସେମିତି ଜାତିବାଲା ଶ୍ରେଣୀ ଦରକାର । ଆମେ ଡାକ୍ତର ଯଦି ଧୁନିଆର ଯେତେ ବୁଲାକୁକୁରଙ୍କର ଚିକିତ୍ସା କରିବୁ ତେବେ ଏଇ ଗୃହକରରେ କ'ଣ ଲାଭ ?

—ଆସିବେ ସାର୍ ! ମୁଁ ଆସି ଡାକିନେବି ।

ଘରକୁ ଫେରି ଉଦୟନାଥ ବାବୁ ବହେ ରାଗିଗଲେ ସମସ୍ତଙ୍କ ଉପରେ । ସେ ଆଉ ଏତେ ଅପମାନ ସହିପାରିବେ ନାହିଁ ସ୍ପେକେଲ୍ ପାଇଁ ।

http://oaob.nitrkl.ac.in

—କ'ଣ କହିଲେ ଡାକ୍ତର ବାବୁ ?

—ସେ କହିଲେ ବଲଡଙ୍ଗର ଚିକିତ୍ସା ହୁଏ । ଦେଶୀଙ୍କର ହୁଏ ନାହିଁ । ସ୍ତ୍ରୀକଟଙ୍କର ହୁଏ ନାହିଁ । ବାବୁଙ୍କର ଚିକିତ୍ସା ହୁଏ ଖାଲି ।

—ଆସିବେ ତ ।

କେଜାଣି ? ଖୁସାମଦ୍ ଖୋଜୁଛନ୍ତି ।

—ତାଙ୍କୁ ମନେପକାଇ ଦେବା ଦରକାର ଥିଲା । ରାସକେଲ୍‌ର ଦେହ ଖରାପ ଅଛି ।

ରାସକେଲ୍ ନା ଶୁଣି ସେ ମୁଣ୍ଡ ଟେକିଲା । ଆପୁଡ଼ି ଦେଇ ସମସ୍ତେ କହିଲେ— ଭଲ ହୋଇଯିବୁରେ ରାସକେଲ୍ ! ଏଇ ଦୁନିଆରେ ଯେତେ ପ୍ରକାରର ବେମାର ବାହାରୁଛି ସେତେ ପ୍ରକାରର ଡାକ୍ତର ଓ ଔଷଧ ବାହାରୁଛନ୍ତି ।

ରାସକେଲ୍ ପୁଣି ଆଖି ବୁଜିଲା । ବେମାର ହେଲେ ଅନ୍ୟମାନେ ଆଉଁସିବେ । ଭଲ ରହିଲେ ରାସକେଲ୍ ଯାଇ ଅନ୍ୟମାନଙ୍କୁ ଚଟାଚଟି କରିବ । ଜଣେ ଯେମିତି ହେଲେ ଆଉଜଣକ କଥା ବୁଝିବ ।

ଏଇ ସଂସାରଟା ହେଉଛି ଗୋଟାଏ ବଡ଼ ସେବାସଂସ୍ଥା । ସେବା ହେଲା ପରସ୍ପରର ବନ୍ଧନ । ରାସକେଲ୍ ଓ ମଣିଷ ଯାହା, ମଣିଷ ଓ ମଣିଷ ସେଇଆ । ସେବା ଥିଲେ ସ୍ନେହ ଅଛି । ସ୍ନେହ ଥିଲେ ମାୟା ମମତା ଅଛି । ସମସ୍ତେ ସମସ୍ତଙ୍କର—କିଏ କେମିତି ପାଇଯାଏ ମରିବା ଆଗରୁ । ପୁଣି କିଏ କେମିତି ପାଏ ମରିବା ପରେ ।

ସେଇ ପରିବାର ଉପରେ ଦୁଃଖର ପତଳା ମେଘ ନଇଁ ଆସିଛି । ରାସକେଲ୍ ଆସି ତାହାର ବଚ୍ଛଣାରେ ରହିଛି । ଘର ଭିତରୁ ଗୁଳ ଆସିଲାଣି । କେହି ତଡ଼ି ନାହାନ୍ତି । ଆପଣା ଛୁଇଁ ଆସିଛି ।

ଗୁହିଁ ଗୁହିଁ ସନ୍ଧ୍ୟାଦୀପ ଜଳିଲାଣି । ଡାକ୍ତର ଆସିଲେ ନାହିଁ । କେହି ବଡ଼-ବଡ଼ଆଙ୍କର କୁକୁର ହୋଇଥିଲେ ନିଶ୍ଚୟ ସେ ଆସି ଯାଇଥାନ୍ତେ । ଅନ୍ତା ଫାଷ୍ଟକ୍ଲାସ କାମଗୁ ସିନା ସଫା ହେବ ଚଞ୍ଚଳ । ଏଇ ଥାର୍ଡ଼ କ୍ଲାସକୁ ପଚାରେ କିଏ ?

ଘରର ଥାର୍ଡ଼କ୍ଲାସ ଆଦମୀକୁ ପଚାରେ କିଏ ? ସଭ୍ୟମମିଁଙ୍କର ଥାର୍ଡ଼କ୍ଲାସ ବାଳାଙ୍କୁ ବା ପଚାରେ କିଏ ?

ରାସକେଲ ଉପାସ କଲା । ରାତିରେ ଉଠିଲା ନାହିଁ । ଗୁମୁଚେ ପାଣି ପିଇଲା । ପୁଣି ଦ' ଗୁମୁଚ ଦୁଧ ଖାଇଲା । ଆଉ ଖାଇଲା ନାହିଁ । ଯେ ଯେତେ ଆଉଁସିଲେ ସେ ଗୁହିଁଲା ନାହିଁ । ଦେହରେ ତାର ଜର ।

http://oaob.nitrkl.ac.in

—କ'ଣ କରିବା ? ଗ୍ରସକେଲ୍‌କୁ ଜର ହେଲା କ'ଣ ପାଇଁ ? ତାକୁ ଆଖି ଆଗେ ଆଗେ ରଖିବା ଛଡ଼ା ଅନ୍ୟବାଟ ନାହିଁ ।

ଯିଏ ଆମକୁ ଆଦର କରିବାକୁ ଆସିବ ସେ ଅବଶ୍ୟ ଗ୍ରସକେଲ୍ କଥା ବୁଝିବ ।

ଆସିଲେ ଭୂପେନ ବାବୁ ।

—କ'ଣ ଖବର ? ଏଠି କଣ ହେଉଛି ?

—ଆମର ଗ୍ରସକେଲ୍ ଦେହ ଖରାପ ହେଇଛି । ଡାକ୍ତରଙ୍କୁ ଡାକିଥିଲୁ ଯେ ସେ ଆସିଲେ ନାହିଁ ।

—ସବୁ ହେଉଛି ଯୋଗର ବରାଦ ।

—ରୋଗୀକୁ ଦେଖିବାକୁ ଡାକ୍ତରଙ୍କୁ ଖବର ଦିଆ ହେଲା । ଏଥିରେ ଯୋଗ କ'ଣ ?

—ହଉ ତେବେ ଶୁଣ । ଗୋଟିଏ ମଣିଷ ପିଲାର କଥା । ଦଶହରା ପୂଜା-ବେଳେ ଗୋଟାଏ ପିଲାର ଦେହ ଖରାପ ହେଲା । ନିଶ୍ୱାସ ବନ୍ଦ ହୋଇ ଆସୁଛି—ଡିପ୍‌ଥେରିଆ ।

—ଔଷଧ ଅଛି ତ ।

—ଔଷଧ ଥିଲା । ବହୁତ ଜାଣିବା ଡାକ୍ତର ମଧ୍ୟ ଥିଲେ । ଡିପ୍‌ଥେରିଅମ୍ ହଜାରେ ଶିଶି ବା ଔଷଧ ବାକ୍‌ସରେ ଥିଲା । ଜନେଜଣ ଡାକ୍ତର ସେଇ ଔଷଧ ବାକ୍ସ ଖୋଜିଲେ ।

—ମିଳିଲା ନାହିଁ । ଥିଲା ଔଷଧ—ଗଲା କୁଆଡ଼େ ?

—ପୁଣି ଖୋଜା ଖୋଜା ହଇରାଣ ହେଲେ । କଟକକୁ ଲୋକ ଗଲା ଔଷଧ ଆଣିବାକୁ । ଏଣେ ବେମାର ଗାଢବାକୁ ଆରମ୍ଭ କଲା ।

—ଔଷଧ ଆସି ପହଞ୍ଚିବା ବେଳକୁ ରୋଗୀ ମରିଗଲାଣି । ଔଷଧ କାମରେ ଲାଗିଲା ନାହିଁ । ସେତେବେଳେ ଦେଖାଗଲା ଯେ ସେଇ ଡିପ୍‌ଥେରିଅମ୍ ହଜାରେ ସେଇ ଔଷଧ ବାକ୍‌ସରେ ରହିଛି । କାମବେଳେ ମିଳିଲା ନାହିଁ ।

ଔଷଧ ଥାଇ, ଡାକ୍ତର ଥାଇ ରୋଗୀର ରକ୍ଷା ହେଇପାରିଲା ନାହିଁ । ନିଜର ଘରର ପିଲାକୁ କେହି ଅଣହେଲା କରି ନ ଥିଲେ; ତେବେ ବି ସେ ଚାଲିଗଲା । ସମସ୍ତଙ୍କୁ ସେଇ ଔଷଧ ବାକ୍‌ସ ଭେଲିକି ଦେଖାଇଦେଲା – ଅଛି କିନ୍ତୁ କେହି ପାଇଲେ ନାହିଁ ।

—ଏସବୁକୁ ଏମିତି ବିଶ୍ୱାସ କରୁଥିବାରୁ ମଣିଷ ଦୁର୍ବଳ ହେଇପଡୁଛି ।

http://oaob.nitrkl.ac.in

ଭୂପେନ ବାବୁ ହସି କହିଲେ—ଆଉ ଗୋଟିଏ କଥା ନିଜର ଜୀବନରୁ କହୁଛୁ ।

ସେଇଟା ହେଉଛି ଏମିତି ଗୋଟାଏ ଘଟଣା—ନିଜର ଜୀବନରେ ଘଟିଥିଲା । ମୋର ଯେଉଁ ଗୋଡ଼ଟି ନାହିଁ, ତାକୁ ଜଣେ ମଣିଷ ନେବାକୁ ଆସିଥିଲା—ସେତିକି ଥିଲା ତାହାର କାମ ।

ସେଦିନ ସକାଳୁ ଖୁବ ବ୍ୟସ୍ତ ଲଗିଲା ଯେ ମକଦ୍ଦମାଟାଏ ସେଦିନ ନିଷ୍ପତ୍ତି ପଡ଼ିବ । ନ ଗଲେ ପକ୍ଷର କ୍ଷତି ହେବ—ପକ୍ଷ ହେଉଛି ସରକାର ।

ଟେଲିଫୋନ କରି ଡେରି ହେଲା ତାଗିଦ୍ କରି ଫଳ ଦେଖାଇଲା ନାହିଁ । ବାଧ୍ୟ ହୋଇ ସରକାରୀ ଜିପ୍‌ରେ ଗଲିଲେ ।

ଅନୁଭବୀ ଓକିଲ ହୋଇ ମଧ୍ୟ ସେ ମନେକରିପାରିଲେ ନାହିଁ ଯେ ସେଦିନ ସରକାରଙ୍କର ଜବାବ ଦାଖଲ ହେବ । ମକଦ୍ଦମା ପଡ଼ିବା କଥା ନୁହେଁ ।

ତାହାର କିଛି କଥା ମନେ ନାହିଁ । ଜିପ୍ ଗଲିଲା ରସୁଲଗଡ଼ ଦେଇ ବିଶ୍ୱ-ବିଦ୍ୟାଳୟ ରାସ୍ତାରେ । ଜିପ୍‌ର ବାଁ ପାଖରେ ଡ୍ରାଇଭର ରହିଛନ୍ତି । ଭୂପେନ ବାବୁ ବସିଲେ ଡାହାଣ ପାଖରେ—ପାଖ ଫୁଟ୍‌ବୋର୍ଡରେ ଡାହାଣ ଗୋଡ଼ ଅଳ୍ପ ରଖି ।

ଜିପ୍ ଭୁବନେଶ୍ୱର ଉଠାଣି ଉଠିଲାବେଳେ ଗୋଟିଏ ନୂଆ ମଟରସାଇକେଲରେ ଜଣେ ଶିଖ ଯୁବକ ଆସି ଜିପ୍‌ରେ ବାଡ଼େଇ ହୋଇଗଲେ । ଗୋଡ଼ଟି ଗଲିଗଲା ପୁରା ।

ଜିପ୍‌ରେ ଥିବା ଅନ୍ୟ ଲୋକ ଓହ୍ଲାଇ ଆସି ଭୂପେନ ବାବୁଙ୍କୁ ଡାକ୍ତରଖାନା ନେଇଗଲେ । ଅଳ୍ପ ସମୟପରେ ସେଇ ଅଚେତ୍ ମଟରସାଇକେଲ ଚଢାଳି ଆଉ ଗୋଟିଏ ଗାଡ଼ିରେ ଆସିଲେ ।

କାପିଟାଲ ଡାକ୍ତରଖାନାରେ ଦୁହେଁ ରହିଲେ । ପନ୍ଦର ଦିନ ପରେ ଭୂପେନ ବାବୁ ଭଲ ହେବାକୁ ଆରମ୍ଭ କଲେ । ସେଇ ଶିଖ ଯୁବକଟି ଧୀରେ ଖରାପ ଆଡ଼କୁ ଗଲିଲେ । ଭୂପେନବାବୁଙ୍କର ଗୋଡ କଟା ହେଇ ଶୁଖିଲା ବେଳକୁ ସେହି ଶିଖ ଯୁବକଟି ମରିଗଲେ ।

ତାଙ୍କର ବୟସ ଏକୋଇଶି । ସେ ବୋଧହୁଏ ଜନ୍ମ ହୋଇଥିଲେ ଭୂପେନ ବାବୁଙ୍କର ଗୋଡ଼ଟି ଛଡ଼େଇ ନବା ପାଇଁ । ଆଉ ତ ଅନ୍ୟ କାମ କିଛି ନ ଥିଲା ।

ସେଇ ଜୀବନଟି ଅନ୍ୟ କ'ଣ କରିଥାନ୍ତା ସେ କଥାର ଉତ୍ତର ଦିଆ ଯାଇପାରିବ ନାହିଁ । କିନ୍ତୁ ଜଣାଗଲା ଯେ ସେଇ ଦିନର ଦୁର୍ଘଟଣା ବିଧାତାଙ୍କର ବିଧାନ ।

ତେଣୁ ଆମେ କପର କେଉଁ କଥାକୁ ବୁଝିବା ? ଈଶ୍ୱର କରୁଛନ୍ତି କି କରାଉ-ଛନ୍ତି ତାହାର ଉତ୍ତର କିଏ ଦବ ?

http://oaob.nitrkl.ac.in

ଏତକ କଥାସାର କହିଲେ ସେ ଗ୍ରେସକେଲ୍ କ'ଣ ପାଇଁ ଏଇ ଘରକୁ ଆସିଛି ତାହାର ଜବାବ କେହି ଦେଇପାରିବ ନାହିଁ । କେହି ତାକୁ ଖୋଜି ନ ଥିଲେ । ସେ ଆପଣା ସ୍ୱୟଂ ଆସି ଏବେ ସେବା ଯତ୍ନ ନେଉଛି ।

—ସେମିତି କହିଲେ ଚଳିବ ନାହିଁ । ଗ୍ରେସକେଲ୍ ଯାହା ହୋଇଥାଉ, ସେ ଆମର ମନକୁ ସେଉଁରେ ବାନ୍ଧି ଦେଇଛି ।

—ଭଲ ହୋଇଯାଇପାରେ । ଡାକ୍ତର କ'ଣ କହୁଛନ୍ତି ଶୁଣାଯିବ ।

ସେଇ ରାତିଟା ଗ୍ରେସକେଲ୍ ଶୋଇ ରହିଲା । ସକାଳୁ ଆସି ଧୂଆଁର ମୁହଁରେ ସମସ୍ତଙ୍କ ସାଙ୍ଗରେ ଠିଆ ହେଲା—ତାହାର ରୁଟି ପାଇଁ ।

—ରୁଟି ଖାଇଲା ।

—ଆରେ ଗ୍ରେସକେଲ୍ ପୁରା ଭଲ ହୋଇଗଲାଣି ଦେଖ । ରୁଟି ଖାଇଲା, ଧୂଆଁର ବାନ୍ଧ ପାଖରେ ଠିଆ ହେଲା । ଦୁଧ ଟିକିଏ ପିଇଲା ।

ପ୍ରତିଦିନ ଗାଈଦୁଧ ଗରମଖାଇଲା ଗ୍ରେସକେଲ୍ ନିଷ୍ଟ୍ୟୁ ଆସି ପହଞ୍ଚିବ ଓ ଜୋର କରିବ ତା'ର ହ'ଗ୍ରମତ ଦୁଧ ପିଇବା ପାଇଁ । ବାଲଟି ଶବ୍ଦ ଶୁଣିଲେ ସେ ଧାଇଁ ଧାଇଁ ଆସେ ।

ସେ ଦିନ ଦୁଧ ପିଇ ପାଡ଼େଷ୍ଟା ଡେଇଁ ଚାଲିଗଲା । ତା' ଆଗରୁ ଯେ ସେ ବେମାରରେ ପଡ଼ିଥିଲା— ବେମାରର ଚିହ୍ନ ବର୍ତ୍ତି ନାହିଁ ।

ଗ୍ରେସକେଲ୍ ପୁରା ଭଲ ହୋଇଯାଇଛି । ଡାକ୍ତରଙ୍କର ଔଷଧ ବୋଧହୁଏ ଦରକାର ନାହିଁ ।

ପାଡ଼େଷ୍ଟା ସେପାଖରେ ଯାଇ କାଳେ ପୁଣି କାଦୁଅ ଖାଇ ବେମାର ହେବ ସେଥିପାଇଁ ତାକୁ ଡକା ହେଲା । ସେ ଡାକ ଶୁଣିଲେ ଆସେ – ପୁଣି ବୁଲି ଚାଲିଯାଏ ।

ତା'ର ପରିଚିତ ରାସ୍ତାକୁ ଚାଲିଗଲା । ବୁଲିବୁଲି କରି ଘରକୁ ଫେରି ଲଙ୍ଗୁଡ଼ ହଲାଇଲା । ଅନୁତାପ ନାହିଁ ତା'ର ମନରେ । ସେ ତା'ର ମନ ଅନୁସାରେ ବୁଲୁଛି ।

ଖାଇଲାବେଳକୁ ଖୁବ୍ ଭଲରେ ସେ ତା'ର ମାଂସ ଭାତ ଖାଇଲା । ଅନ୍ୟ କୁକୁରଙ୍କୁ ଛୁଆଁଇ ଦେଲା ନାହିଁ । ସେ ଯେମିତି ଯାହା କରୁଥିଲା ସବୁ ସେମିତି କରିଥିଲା ।

ସବୁ ପାସୋର ଯାଉଛି । ତାର ଦେହ ଖରାପ ଥିଲା—ଏତିକ ବି ଭାବିବା କଷ୍ଟ ।

—ଏଁ, ଗ୍ରେସକେଲ୍ ! ପୁଣି ଘର ଭିତରେ !

http://oaob.nitrkl.ac.in

ରାସକେଲ୍ ଶୁଣିଲା ନାହିଁ । ସେ ଘର ଭିତରେ ଶୋଇପଡ଼ିଲା । ଘର ଲୋକ ଆପଣା ଭିତରେ ଗୋଳମାଳ କଲେ । ରାସକେଲ୍ କଥା ମାନୁ ନାହିଁ ।

ତାହାର ଦେହ ଖରାପ ଥିଲା । ଟିକିଏ ଭଲ ହେଇଗଲେ ତାକୁ ଶାସନ କରି ରଖିବାକୁ ହେବ । ବୁଝାଇଲେ ସେ ବୁଝିପାରିବ ଯେ କୁକୁରର ସ୍ଥାନ ଘର ଭିତରେ ନୁହଁ ।

କିଏ ଏକଥା ବୁଝିଲା । ସଂସାରରେ ଯେତେ କୁକୁର ରହିଛନ୍ତି ସମସ୍ତେ ଘରର ଲୋକ ହେବାକୁ ଆଗ୍ରହୀ । ନ ହୋଇପାରିଲେ ମନ ଦୁଃଖରେ ରହିବାକୁ ପଡ଼େ । ମହାଭାବ ବାବୁଙ୍କର, ବଳୂ ବାବୁଙ୍କର, ନନ୍ଦମାଦେବୀଙ୍କର କୁକୁରମାନେ ଏମିତି ଲଢ଼ୁଛନ୍ତି ଘର ପାଇଁ ।

କୁକୁରମାନେ କେବେହେଲେ ପଚାରି ନାହାନ୍ତି ଘରଟା ମଣିଷର ନା କୁକୁରଙ୍କର । କୁକୁରରୁ କିଏ ମଣିଷ ହେଇଛି ? ନା, ମଣିଷରୁ କୁକୁର ପାଲଟିଛି ।

କୁକୁର ଖୋଜେ ନିଜର ହତାଟିଏ । ରାସକେଲ୍ ସେଇଆ ଖୋଜୁଥିଲା । କିଏ ଚାହେଁ ଆଡେଇ ହେଇ ରହିବାକୁ—ପିଲା, ପଢ଼ା ପିଲା, ନୌକର ପିଲା ? କେହି ଖୋଜନ୍ତି ନାହିଁ ।

ସମସ୍ତେ ଚାହାନ୍ତି ଯେଉଁ ପ୍ରକାରରେ ହେଉ ଭିତରକୁ ପଶିବେ ଓ ଆସ୍ଥାନ ଜମାଇ ରହିବେ ।

ରାସକେଲ ସେଇଆ ଚାହୁଁଥିଲା । କେଇଦିନ ପଦାରେ କଟାଇଲା ପରେ ସେ ଘର ଭିତରକୁ ଆସିଛି । ରହିବାକୁ ଚେଷ୍ଟା କରୁଛି ଓ ରହିଗଲା ମଧ୍ୟ ।

ଘଣ୍ଟାଏ ଦେଢ଼େ ଶୋଇଲା । ଘରୁ ଘର ଭିତରକୁ ଟିକିଏ ଟିକିଏ ଗଲା । ଘର ଭିତରକୁ ଯାଉ ନ ଥିଲା । ସେଦିନ ସେ ଗଲା—ପୂଜା ଘରକୁ ବି ପଶିଗଲା ।

—ଏ ରାସକେଲ୍, ଯା···ଯା ··

ନ ଶୁଣିଲା ପରି ରାସକେଲ୍ ବାହାରେ ଚାଲିଗଲା ନିଜର ବିଛଣା ପାଖକୁ । ଗଲାବେଳେ ସେ କରୁଣ ଆଖିରେ ଚାହିଁଥିଲା ମାଲିକମାନଙ୍କର ମୁହଁକୁ ।

ଏତେ ସ୍ନେହ କରୁଥିଲା ମାଲିକର ଘରକୁ ଓ ମାଲିକମାନଙ୍କୁ । କେହି ହେଲେ ତାହାର ଶ୍ରଦ୍ଧାର ଜବାବ ଦେଲେ ନାହିଁ । ସମସ୍ତେ ଶୁଣାଇଲେ ଯେ ରାସକେଲ୍ ପର—ରାସକେଲ୍ ବାହାରର ଲୋକ ।

ଘର ଭିତର ଥଣ୍ଡା । ବାହାରେ ଗରମ ପବନ । ହେଲେ ବି ରାସକେଲ୍ ଯାଇ ତାହାର ବିଛଣାରେ ଶୋଇଲା ।

http://oaob.nitrkl.ac.in

ଭଲ ହେଲା ରାସକେଲ୍ ଚାଲିଗଲାଣି ନିଜର ଜାଗାକୁ । ନିଶ୍ଚୟ ତାହାର ବୁଦ୍ଧି ଅଛି । ସେ ନିଜର ସୀମା ସରହଦ ଜାଣେ ।

ମଣିଷ ଏମିତି ସମସ୍ତଙ୍କୁ ତାହାର ନିଜର ଆପଣାର କଲେ ବି ତାଙ୍କୁ ତାଙ୍କର ସରହଦରେ ରହିବାକୁ ଚାହେଁ । ଯେ ଏଇ ସରହଦ ନିୟମ ନ ମାନିଲା ସେ ହୋଇଯାଏ ଅଡୁଆ ।

ସେଦିନ ଖରାବେଳ ଭାରି ଟାଣ ଖରା ହୋଇଥିଲା । ରାସକେଲ ଆଡ଼ିକୁ ଲେଉଟାଣି ଖରା ତାହାର ଆଲୁଅ ପକାଉଥାଏ । ରାସକେଲ୍ ସେମିତି ଚେରିପିଠିଆ ହୋଇ ଶୋଇଲା ।

ଘଡ଼ି ଚାଲିଛି । ଆକାଶରେ ସୂର୍ଯ୍ୟ ଚାଲିଛନ୍ତି । ପ୍ରତ୍ୟେକ ଜୀବ ସେଇ ଗତିରେ ଆଗେଇ ଚାଲିଛି । ଆଗରେ ରହିଛି ମରଣ ।

ମରଣ ଯେ ରୋଗପରେ ଆସେ ଅବା ବାର୍ଦ୍ଧକ୍ୟ ଘେରିଗଲା ପରେ ଆସେ—ଏମିତି କିଛି ଧରାବନ୍ଧା ନିୟମ ନାହିଁ । ଚୁ’ ପିଉ ପିଉ ହୁଏ ଏଠି ସେଇ ମରଣ ବନ୍ଧୁ ଚାଲିଆସେ ଡାକିବା ପାଇଁ । ନିଜ ଘରକୁ ଯିବା ବେଳେ ବି ଆସି ଦେଖାଦିଏ ଅଧ ବାଟରେ—ନାହିଁ ନାହିଁ ବନ୍ଧୁ—ଯିବା ଆଉ ଦରକାର ନାହିଁ ।

ଏଇଠି ପଡ଼ିଛି ପୂର୍ଣ୍ଣଚ୍ଛେଦ । ଜୀବନର ଗୋଟିଏ କଥା ଅଜଣା—ସେଇଟି ହେଲା ଜୀବନର ପୂର୍ଣ୍ଣଚ୍ଛେଦ କେଉଁଠି ।

ସମସ୍ତେ ଥିବେ, ଆଲୁଅ ପବନ ବୋହୁଥିବ, ଆଶା ଅଶଙ୍କାର ଢେଉ ଥରୁଥିବ, ଆଉ ପହରର କାମ ତାଲିକା ଥିବ, ଗାଡ଼ି ଅଟକି ଯାଏ ।

ତିନି ଚାରିଘଣ୍ଟା ପରେ ରାସକେଲ୍ର ମାଲିକ ବେବି ବାହାରକୁ ଯାଉଥିଲା । ଦେଖିଲା ଯେ ରାସକେଲ୍ କଦୋଡ ନିଦରେ ସପନ ଦେଖିଲା ପରି ଗଁ ଗଁ ହେଉଛି । ତାହାର ଆଖି ଓ ମୁହରେ ନାଲି ପିମ୍ପୁଡ଼ି ।

—ବାପା, ରାସକେଲ୍ ମୁହଁରେ ପିମ୍ପୁଡ଼ି ବେଢ଼ିଛନ୍ତି । ସେ ଗଁ ଗଁ ହେଉଛି ।

—ଏଁ, ଆମର ରାସକେଲ୍ । ସେ ଖେଳବୁଲ୍ ଅନେକ କରିଛି । ତାହାର ମୁହଁରେ ବୋଧହୁଏ ମାଂସ ବାସନାକୁ ପିମ୍ପୁଡ଼ି ଆସିଛନ୍ତି ।

—ସେ କରୁଛି କ’ଣ ?

—ଶୋଇ ରହିଛି ।

—କ’ଣ ପୁଣି ଦେହ ଖରାପ ହେଲା ? ଗଁ ଗଁ ହେଉଛି କାହିଁକି ? ପିମ୍ପୁଡ଼ି କାମୁଡ଼ିବା ଜାଣିପାରୁ ନାହିଁ କେମିତି ?

http://oaob.nitrkl.ac.in

ଦେଖିଲା ବେଳକୁ କଛୁ ପିମ୍ପୁଡ଼ି ଲଗି ଗଲେଣି ରାପକେଲ୍ ବଛଣାରେ । ଚଞ୍ଚଲ କରି ବଛଣା ଝାଡ଼ି ରାପକେଲ୍ ଗୃହଅଭେ ଗାମାକ୍ସିନ୍ ଲଗା ହେଲା ରାପକେଲ୍ ଶୋଇଥାଉ ।

ରାପକେଲ୍‌କୁ ଆଉଁସିଲେ ସେ ଆଖି ଖୋଲିଲା ନାହିଁ । ତାହାର ମା ସେତେବେଳେ ନ ଥାଏ । ସେ କୁଆଡ଼ୁ ଆସି ପହଞ୍ଚିଲା ଆସି । ରାପକେଲର ମୁହଁ ଓ କାନ ଗୃଣ୍ଟି ଦେଲା । ଗୋଟାଏ ଟିଙ୍କ ଖସି ପଡ଼ିଲା କାନରୁ ।

ମାଡାମ୍ ନାର୍ଣ୍ଣିର ବଡ଼ ଗେହ୍ଲାପୁଅ ରାପକେଲ୍ । ମାଆ ଆସି ତାହା କଥା ବୁଝିଲିଣି ।

ସମସ୍ତେ ଘର ଭିତରକୁ ଗଲେ । ରାପକେଲ୍ ବଛଣା ଘୁଞ୍ଚାଇ ଦିଆଗଲା ଟେବୁଲ ଗ୍ରୁଇ ତଳକୁ ।

ପାଞ୍ଚ ମିନଟ୍ ପରେ ପୁଅ ଦେଖିଲା ବେଳକୁ ରାପକେଲ୍ ମରିଗଲାଣି ।

—ହେଇ ରାପକେଲ୍ ମରିଗଲା !

—କ'ଣ ? ଏବେ ତା'ର ମାଆ ତାକୁ ଗୃଣ୍ଟିଥିଲା । ମା ଶୋଇଛୁ ।

—ହଁ । ରାପକେଲ୍ ନିଶ୍ୱାସ ଗୃଲୁ ନାହିଁ । ତାହାର ଦାନ୍ତ ପଦାକୁ ବାହାରି ଆସିଛୁ ।

ନିଶ୍ଚିତରେ ରାପକେଲ୍ ହାର୍ଟଫେଲ କଲା ।

ସମସ୍ତେ ଡକାଡକି ହୋଇ ଉଠିଲେ ଦେଖିଲେ ରାପକେଲ୍ ମରିଯାଇଛୁ । ମାଆ ଶୋଇଛୁ ପାଟରେ—ସେ ବୋଧହୁଏ ଜାଣିପାରି ନାହିଁ ଯେ ତାହାର ପିଲା ମରିଯାଇଛୁ ।

ମରିଗଲା କାହିଁକି ?—ସମସ୍ତଙ୍କ ଆଖିରୁ ପାଣି ଗଡ଼ି ଆସିଲା । ଅହା, ମରିବ ବୋଲି ସେ ହେଉନ ପାଟେଣ୍ଟ ଡେଇଁଛୁ । ଦୂର ରାସ୍ତାକୁ ଯାଇଛୁ । ଘର ଭିତରକୁ ଆସିଛୁ । ସେପେଇ ଘର ଦୁଆରର ମୁହଁରେ ଶୋଇଛୁ । ପ୍ରତ୍ୟେକ ଘର ଭିତରକୁ ଥରେ ଥରେ ଯାଇଛୁ ।

ମାତ୍ର ଗୃରିଘଣ୍ଟା ପରେ ବଟର ଗୃଲି ଯାଇଛୁ—ସବୁ ମାସ୍ୱା ଗ୍ରୁଡ଼ି । ଭଲ ହୋଇ ଯାଇଥିଲା । ଭଲ କରି ଖାଇଥିଲା । ଭାଇଭଉଣୀମାନଙ୍କ ସାଙ୍ଗରେ ତାହାର କୌତୁକ କରିଥିଲା । ମାଆକୁ ଦେଖିଥିଲା । ନିଜର ମାଲିକମାନଙ୍କୁ ଦେଖିଥିଲା । ସମସ୍ତଙ୍କର ହାତ ଲାଗିଥିଲା ରାପକେଲ୍ ଦେହରେ ।

ରାପକେଲ୍ ଆଉ ନାହିଁ । କାହିଲେ ମଧ୍ୟ ରାପକେଲ୍ ଫେରିବ ନାହିଁ । ସେ ଗୋଟାଏ ପଶୁ କି ମଣିଷ ସେ କଥା କହି ଦେଇହବ ନାହିଁ ।

http://oaob.nitrkl.ac.in

ଛଅ ମାସର ଛୁଆ କୁକୁର ଚାଲିଗଲା ବେଳେ ସମସ୍ତଙ୍କୁ କନ୍ଦାଇଛି । ସେ କାହା ପାଇଁ କିଛି କରି ନାହିଁ । ଘର ଜଗି ନାହିଁ । ଶିକାର ପାଇଁ ଲଢ଼ି ନାହିଁ । ତାହାର ରୂପକୁ ମନରେ ଜାହିର କରିବା ଆଗରୁ ଗ୍ରସକେଲ୍ ଚାଲିଯାଇଛି—ଏମିତି ହଠାତ୍ । ଏତେ ହଠାତ୍ । ଠିକ୍ ମଣିଷଙ୍କ ପରି ।

ସତରେ କ'ଣ ମଣିଷ କାନ୍ଦେ କୁକୁରଙ୍କ ପାଇଁ ? ନା, କୁକୁର କାନ୍ଦେ ମଣିଷଙ୍କ ପାଇଁ ।

କିଏ ସ୍ଥାନ ପାଉଛି । କିଏ ସ୍ଥାନ ହରାଉଛି । ସମ୍ବନ୍ଧ ତ ମଣିଷ ଓ କୁକୁରଙ୍କର । କେଉଁଠି ମଣିଷ କୁକୁର ହେଉଛି କ୍ଷମତା ପାଇବାକୁ । ପୁଣି କୁକୁର ପୋଷିଛି କ୍ଷମତାକୁ ରଖିବାକୁ । ଚଳନ୍ତି ନଈ ପରି କେଜାଣି କେତେ ସେବାଯତ୍ନ ଆଣି ସେ ଢାଳି ଦେଇଛି—ମଣିଷ ଢାଳିଛି କୁକୁର ଉପରେ । କୁକୁର ପକାଇଛି ମଣିଷ ଦେହରେ ।

ପ୍ରତ୍ୟେକ କୁକୁର କ'ଣ ପ୍ରଭୁଭକ୍ତି ଦେଖାଇ ପ୍ରଭୁଙ୍କୁ ସ୍ମରଣ ରଖି ସେବା କରିଛି ? ପ୍ରତ୍ୟେକ ମଣିଷ କ'ଣ ତାହାର ଆଶ୍ରିତ ଓ ପାଳିତଙ୍କୁ ନିଜର କରି ଶେଷ ଯାଏ ହୃଦୟରେ ସ୍ଥାନ ଦେଇଛି ?

ଈଶ୍ୱର କ'ଣ କୁକୁର ପ୍ରୀତି ମଣିଷର ଅନ୍ତରରେ ଜନ୍ମାଇଛନ୍ତି ? ନା ମଣିଷ ନିଜର ଚେଷ୍ଟାରେ କୁକୁରକୁ ତାହାର ସ୍ନେହ ଦେଇଛି ?

ମଣିଷ ଏଇ ସଂସାରରେ ବୁଲିଲା ବେଳେ ଯେତେବେଳେ ରାସ୍ତାକଡ଼ ଗଛରୁ ଫୁଲଟିଏ ନେଇ ତାକୁ ସ୍ନେହ କରେ । ସେଇ ସ୍ନେହ କ'ଣ ମଣିଷର ସ୍ନେହ ? ନା, ଈଶ୍ୱରଙ୍କର ଇଚ୍ଛାରେ ମଣିଷ ମନରେ ଆସୁଥିବା ସ୍ନେହ ?

ଯେଉଁମାନେ ନିଜର ଇଚ୍ଛାରେ ସାଥୀ ନ ହୋଇ କୁକୁର ହେଲେ ବା ସେବକ ହେଲେ, ପ୍ରଭୁଭକ୍ତିର ଓ ବିଶ୍ୱାସର ଶପଥ ନେଲେ ସେମାନେ କ'ଣ ପ୍ରକୃତରେ ବିଦ୍ରୋହୀ ଓ ବିଶ୍ୱାସଘାତକ ଥିଲେ ? ନା, କାର୍ଯ୍ୟକ୍ଷେତ୍ରରେ ପ୍ରଭୁର ଓ ମାଲିକର କାମ ଓ କାରବାର ଦେଖି ବିଦ୍ରୋହୀ ହେଲେ ? ନା, ମୂଳରୁ ସେମାନେ କୁକୁର ହୋଇ ନାହାନ୍ତି । ଆସିଥିଲେ ନିଜନିଜର ସ୍ୱାର୍ଥ ନେଇ ଏକାଠି ଡକେଇତ ଦଳ ଗଢ଼ିବାକୁ ? ଅବା ଶିକାରୀ ଦଳ ସାଜି ବଣରୁ ନିରପରାଧଙ୍କୁ ନିପାତ କରିବାକୁ ।

ମହାତ୍ମାଗାନ୍ଧୀ କ'ଣ ମଣିଷ ନେଇଥିଲେ ନା କୁକୁର ପାଳିଥିଲେ ? ଅବତାର-ମାନେ କ'ଣ ମଣିଷକୁ ଭକ୍ତ କରନ୍ତି ନା କୁକୁରକୁ କରନ୍ତି ?

ଦେଶ ସେବା ନାଁରେ ଯେଉଁମାନେ ଯାଇ ଏକାଠି ହୁଅନ୍ତି, ସେମାନେ କ'ଣ ମଣିଷର ଦଳ ? ନା ମଣିଷ ଓ କୁକୁରଙ୍କର ଦଳ ? ନା କେବଳ କୁକୁରଙ୍କର ଦଳ ?

http://oaob.nitrkl.ac.in

କି ଉତ୍ତର ମିଳିବ ଆମର ଏଇ ଦରିଦ୍ର ଓଡ଼ିଆ ଭୂଇଁରେ ? କିଏ ଉତ୍ତର ଦେବେ ? ଶ୍ରୀ ବିଶ୍ୱନାଥ ଦାସ, ଗଜପତି ପାରଳା ମହାରାଜା, ଶ୍ରୀ ହରେକୃଷ୍ଣ ମହତାବ ଇତ୍ୟାଦିଙ୍କର ଉତ୍ତର କ'ଣ ହେବ ?

ସେମାନେ କହିବେ କି କୁକୁର ମଲେ କାନ୍ଦିବା ଉଚିତ କି ନୁହେଁ ?

ଗ୍ରେସକେଲ୍ ସେମିତି ପଡ଼ିଥାଏ । ତାହାର ଚମ ଶୁଖିଯାଇଛି । ସୁନ୍ଦର ଦିଶୁଥିଲା । ଏବେ ଯେ ମରିବାର ଅଧଘଣ୍ଟା ଭିତରେ ହେଇଗଲାଣି ଫିକା ଓ ଅସୁନ୍ଦର ।

ଆମ ଗ୍ରେସକେଲ୍ ଚାଲିଗଲା । ଚାଲିଯିବ ବୋଲି ସେ ତାହାର କାମ ଛାଡ଼ିଲାଇ ଦେଇଥିଲା ।

ଗ୍ରେସକେଲ୍ କ'ଣ ମଣିଷ ଥିଲା ? ନା ସେ ପ୍ରକୃତରେ ଗୋଟିଏ କୁକୁର ? ମଣିଷ କ'ଣ ଗ୍ରେସକେଲ୍ ହୋଇପାରେ ? ନା, କୁକୁର କେବଳ ଗ୍ରେସକେଲ୍ ହେବା ସମ୍ଭବ ?

ଘରର ସମସ୍ତେ ଗ୍ରେସକେଲ୍‌କୁ ଘେରି ବସି କାନ୍ଦିଲେ । ଆହା ଗ୍ରେସକେଲ ଚାଲିଯିବ ବୋଲି ଏତେ ଦୁଃଖ ହେଉଥିଲା ? ଭଲ କୁକୁରଟିଏ—ସମସ୍ତଙ୍କୁ ସେ ଭଲ ପାଉଥିଲା ।

ନିଜର ଲୋକ ମରିଛନ୍ତି । କିନ୍ତୁ ସମସ୍ତେ ସମସ୍ତଙ୍କର ଅନ୍ତରର ଅଶ୍ରୁ ନିଗାଡ଼ି ପାରନ୍ତି ନାହିଁ । ସେମାନେ ହୋଇପାରନ୍ତି ରକ୍ତର ସମ୍ପର୍କ । କିନ୍ତୁ କୁକୁର ଛୁଆଟି ମଣିଷର ରକ୍ତ ଓ ନିଜର ରକ୍ତ ନ ହୋଇ ମଧ ରକ୍ତଠାରୁ ଅଧିକ ହେଇଥିଲା ।

ମାଆ ଉଠି ଚାଲିଗଲାଣି । ମରିବା ଜୀବକୁ ଧରି ବାନ୍ଧିକିବା ମଣିଷ ପକ୍ଷରେ ଶୋଭାପାଏ । କାରଣ ମଣିଷର ଆଏ ସ୍ୱାର୍ଥ ।

ସ୍ନେହ ହେଉଛି ମଣିଷର ସ୍ୱାର୍ଥର ମାଳା । ସେ ଯେଉଁଠି ଯାହା ପାଇଥାଏ ସେତକ ଏକାଠି କରି ନିଜକୁ ବୁଝାଏ ଯେ ସେ ଭଲ ମଣିଷ ବୋଲି ଝୁରୁଛି ।

କିନ୍ତୁ ସ୍ୱାର୍ଥ ନ ଥାଇ କେହି କେବେ ଅପରକୁ ଝୁରିବା ସମ୍ଭବ ନୁହେଁ । ପ୍ରଧାନ ସ୍ୱାର୍ଥ ହେଲା ନିଜର ରୁଚି ଓ ଖିଆଲ୍ ।

ଆହା ଗ୍ରେସକେଲ୍‌ର ଫଟୋଟିଏ ରହିପାରିଲା ନାହିଁ । ସେଇଦିନରୁ ଗ୍ରେସକେଲ୍‌ର ଦେହ ଖରାପ ରହି ରହି ଏବେ ସେ ଚାଲିଗଲା ।

ଏବେ ଦିନ ଗୁଡ଼ିକ ଟା ବେଳେ ଏଇ ନିରାଟ ଖରା ଦିନରେ ଫଟୋ ବାଲା କୁଆଡ଼ୁ ମିଳିବେ ? ସିଏ ଆସିବାକୁ ରାଜି ହୋଇଥିଲେ ସେ ବି ଅମଙ୍ଗ ହେଇ-

http://oaob.nitrkl.ac.in

ପାରନ୍ତି । ମଲା ମଣିଷର ଫଟୋ ପିନା ଉଠାଯାଏ । କିନ୍ତୁ ମଲା କୁକୁରର ଫଟୋ ଉଠିବା ପାଗଳାମିର ପ୍ରସ୍ତାବ । ଯଦି ବା ସେ ମିଳନ୍ତି ବା ଟଙ୍କା ଲୋଭରେ ରାଜି ହୁଅନ୍ତି ତେବେ ଆଜି ଦୁ'ଘଣ୍ଟା ଡେରି ।

ସେଇ ଦୁ' ଘଣ୍ଟା ଭିତରେ ରାସକେଲ୍ ଆହୁରି ଅସୁନ୍ଦର ଓ ଅଲୁଆଁ ହୋଇ-ଯିବ । ତାହା ଭାଗ୍ୟରେ ଫଟୋ ଉଠିବା ନାହିଁ । ତେଣୁ ଯେମିତି ସେମିତି ସେ ତାହାର ବିଦାୟ ନେବ । ସଂସାରରୁ ମେଲାଣି ନେଇସାରିଛି—ଘରୁ ବାହାରକୁ ଯିବ ।

ଏମିତି ଚାଲିଯାଇଛନ୍ତି କେତେ ଲୋକ । ରଖି ଯାଇଛନ୍ତି ସ୍ମୃତି । ସମସ୍ତଙ୍କ ପାଇଁ ରହି ଯାଇଥିବା ଲୋକଙ୍କର ଆଖି ସଜଳ ହୋଇ ନାହିଁ ।

କାରଣ ଏଇ ସଂସାରଟାରେ ବିଚିତ୍ର ଭାଗମାପ ନେଇ ମଣିଷ ଓ କୁକୁର ରହିଥାନ୍ତି । ମଣିଷ ଜାଣେ ନିଜକୁ ଅବିଶ୍ୱାସୀ ଓ ବିଶ୍ୱାସଘାତୀ ଭାବିବ ବୋଲି ପାଖରେ ପାଖରେ ରଖିଥାଏ ବଳେ କୁକୁର ।

ପାଟଣା ମହାରାଜା ଶ୍ରୀବ୍ରଜେନ୍ଦ୍ର ନାରାୟଣ ଓଡ଼ିଶା ଶାସନ କରୁଥିଲାବେଳେ ଅନେକ ନୂଆ କୁକୁର ପାଇଲେ । କୁକୁରମାନେ କଟାଳ କରୁଥାନ୍ତି ସ୍ଥାନ ଓ କ୍ଷେତ୍ର ପାଇଁ । କୁକୁରର ପ୍ରଭୁଭକ୍ତି ବିଷୟରେ ଯଥେଷ୍ଟ ଜ୍ଞାନ ଥାଇ ମଧ୍ୟ ସେ ନକଲି କୁକୁରଙ୍କୁ ଚିହ୍ନି ପାରିଲେ ନାହିଁ ।

କିଛି ଦିନ ପରେ ତାଙ୍କର ମର ସଂସାରର ଖେଳ ସରିଲା । ଖବର ପହଞ୍ଚିଲା ଯେ ସେ ଚାଲିଗଲେ ।

ମନେ ହୋଇଥିଲା ଯେ ଅନ୍ତତଃ ତାଙ୍କର କୁକୁରମାନେ ଛୁଟି ନେଇ ଶୋକ ପାଳିବେ । ଏମିତି ଦେଖୁ ଦେଖୁ ଅଫିସବେଳେ ହୋଇଗଲା । କୁକୁରମାନେ ଛୁଟି ମଧ୍ୟ ନେଲେ ନାହିଁ । ଓଲଟି ଠିକ୍ ଅଫିସ ବେଳରେ ନିଜ ନିଜର ଦପ୍ତରକୁ ଆସି କିଛି ହୋଇ ନ ଥିବା ହସର ଶ୍ରେଷ୍ଠ ଝରଣା ଝରାଇଲେ ।

କୁକୁରମାନେ ତାଙ୍କର ରୂପ ଦେଖାଇ ପାରିଛନ୍ତି । ସେମାନେ ତାଙ୍କର କୁକୁର ନ ରହି ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଶାସନର କୁକୁର ପାଲଟି ଯାଇଛନ୍ତି । ନିଜର ଦିନକର ଖାମିନ୍ଦଙ୍କୁ ପାସୋରି ଯାଇଛନ୍ତି ।

ରାସକେଲ୍‌ର ମାଆ ନାର୍ଶି ମାଡାମ୍ ସେଇ କଥା କହୁଥିଲା ରାସକେଲ୍ ମଲା-ପରେ । ସେ ରହିବା କଥା ନୁହେଁ । ଚାଲି ଯାଇଛି । ତାହା ପାଇଁ ବ୍ୟସ୍ତ ହେଲେ ସଂସାର ଅଚଳ ହୋଇଯିବ ।

ଏଇ ସଂସାରଟା ହେଉଛି ବଞ୍ଚିଥିବା ଲୋକଙ୍କର । ଚାଲିଯାଇଥିବା ଲୋକଙ୍କ ଆଡ଼େ ଧାଇଁବା ହେଉଛି ପାଗଳାମି । ଜୀବନ୍ତ ପ୍ରାଣୀ କ'ଣ ମରଣ ନଈକୂଳକୁ ଯାଇ ପାରିବ ? ମାଆ ଚାଲି ଯାଇଥିଲା ସେଠୁ ।

http://oaob.nitrkl.ac.in

ରାସକେଲ୍ ଭାଇଭଉଣୀ ଆସିଥିଲେ । ଦ'ହାତ ଦୂରରୁ ଚାହିଁ ଦେଇ ଓହ୍ଲାଇ ଗଲେ ପିଣ୍ଡା ଉପରୁ । ସେଠି ନିରର୍ଥକ ଶୋକ ସଭା ବସିଛି । ସତେ ସେପରି ସମସ୍ତେ ଅନ୍ନଜଳ ଛାଡ଼ିଦେବେ ?

କୁକୁର ତାହାର କୁକୁରଙ୍କ ପାଇଁ କରେ ନାହିଁ । ମଣିଷ ତାହାର ଖାଉନ୍ଦଙ୍କ ପାଇଁ କରେ ନାହିଁ । ଓଡ଼ିଶା ପରି ରାଜଧାନୀଠାରୁ ଦୂରରେ ରହିଥିବା ଅଞ୍ଚଳରେ ବେଶି ମଣିଷ ଜନ୍ମ ନିଅନ୍ତି ନାହିଁ । ଏଠି ବେଶି ଭାଗ ହୁଅନ୍ତି କୁକୁର—ଖାଉନ୍ଦ ଖୋଜିବାକୁ ।

ଗତ ଅର୍ଦ୍ଧ ଶତାବ୍ଦୀର ଓଡ଼ିଶାରେ ଏଇ ଗଳ୍ପ ବାରମ୍ବାର ପୁନରାବୃତ୍ତି ହେଉଛି । ଏଠି ଖାଉନ୍ଦ ଖୋଜା **ହୁଅନ୍ତି**—ଶ୍ରୀଯୁକ୍ତ ବି. ଦାସ, ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ, ଓ ଶ୍ରୀ ବିଜୁ ପଟ୍ଟନାୟକଙ୍କୁ ଖୋଜା ହୁଏ ଖାଉନ୍ଦର ଶିରପା ଦେବା ପାଇଁ । ତାଙ୍କ ପାଖରେ ଅହରହ କହନ୍ତି—ହେ ମାଲିକ, ତୁମର କ'ଣ କୁକୁର ଦରକାର ନାହିଁ ? ତୁମର ବଗିଚା ବାଡ଼ି କିଏ ଦେଖା ଚାହିଁ କରିବ ?

କୁକୁରଙ୍କର ଜ୍ଞାନ ନାହିଁ—ସାଧାରଣ ଜ୍ଞାନ ଅଛି । ସେମାନେ ରାସକେଲ୍ ପରି ବି ହୋଇପାରୁ ନାହାନ୍ତି । ଏହି କାରଣରୁ ଏଇ ଉତ୍କଳ ଖଣ୍ଡରେ ବିଶିଷ୍ଟ ସାଧକ ଜନ୍ମ ନେଇପାରୁ ନାହାନ୍ତି । ଏହାର ସର୍ବୋତ୍ତମ ସାଧକ ହେଲେ ବାୟା ବାବା । ସେ ଚାଲିଯିବାର ତିନିବର୍ଷ ଚାଲିଲାଣି ।

ପ୍ରତିଭାର ଏଇ ପରିଚୟ ହେଉଛି ଏଇ ଉତ୍କଳର ମାଟି । ଏଇ ମାଟିର ସନ୍ତାନ ହେଲେ ବଞ୍ଚିଥିବା ଲୋକ ଓ ମରିଯାଇଥିବା ରାସକେଲ୍ ।

ଛାଡ଼ି ଦବା ଏଥର ରାସକେଲ୍କୁ । ଘରୁ କାଢ଼ି ପଦାରେ ଥୋଇଲେ ସାହି ଭାଇ ଆପତ୍ତି କରିବେ । ତାକୁ ଅନ୍ତତ ନେଇ କାଠଯୋଡ଼ି ବନ୍ଧ ତଳକୁ ପକାଇ ଦବାକୁ ହେବ । ପୋଡ଼ା ପୋତା ଦରକାର ନାହିଁ । ମଣିଷର ଶବକୁ ପଦାରେ ପକାଇବା ବି ଶାସ୍ତ୍ର ଅନୁସାରେ ଠିକ୍ ।

ବାପା, ଉଦୟକୁମାର । ରାସକେଲ୍କୁ ନେଇଯାଆ । ଏଠି ରଖି ଲାଭ ନାହିଁ । ସନ୍ଧ୍ୟା ହୋଇ ଆସିଲାଣି । କେହି ଦେଖିବେ ନାହିଁ ।

ଖବରକାଗଜରେ ରାସକେଲ୍ ଗୁଡ଼ା ହୋଇ ସୁତାରେ ବନ୍ଧା ହେଲା ସାଇକଲ୍ କେରିଅର ଦେହରେ ।

ରାସକେଲ୍ ଘରୁ କଢା ହୋଇ ଫାଟକ ପାର ହେଲାବେଳେ ତାହାର ମା, ଭାଇ ଭଉଣୀ ସାଙ୍ଗରେ ବି ଗଲେ ନାହିଁ । ସେମାନେ ଭୁଲିଗଲେଣି ତାଙ୍କର ଗୋଟାଏ ସାଙ୍ଗ ଥିଲା ବୋଲି ।

http://oaob.nitrkl.ac.in

ରାପକେଲ୍ ବିଦାୟ ହୋଇଗଲା । ପକ୍କା ପିଣ୍ଡା ଧୂଆ ହେଲା । ରାପକେଲ୍‌ର ଅଖା ବି ଧୂଆ ହେଲା ।

ପାଣି ସବୁ ଜିନିଷକୁ ପବିତ୍ର କରିଦିଏ । ପାଣି ସମସ୍ତ ପଦାର୍ଥର ସ୍ମୃତିକୁ ବି ଧୋଇ ଦିଏ ।

ଉଦୟକୁମାର ଫେରି ଆସିଲା । ରାପକେଲ୍‌କୁ ଘରୁ ବାହାର କରି ଦିଆ-ହୋଇଛି ।

ରାସ୍ତାରେ ଲୋକ ଚାଲିଯାଉଛନ୍ତି । କେହି ମଣିଷ ଓ କେହି କୁକୁର । ମଣିଷଙ୍କର ଅଭାବ ଅଛି । କୃତଜ୍ଞତା ବି ଅଛି । ଯାହାର ଅଭାବ ଯେତେ ଅଧିକ ତାହାର ହୃଦୟରେ ସେତିକି କୃତଜ୍ଞତା ।

ଆଉ ଯେଉଁମାନଙ୍କର ସ୍ଥିତିର ଅଭାବ କମ୍ ତାଙ୍କ ମନରେ କୃତଘ୍ନତାର ମାତ୍ରା ଅଧିକ । ସେମାନେ କହୁଛନ୍ତି ଯେ ଏଇ ବିମାନ ରହିବ କେଉଁଠି ? କୃତଜ୍ଞତା ମାନେ ହେଲା ପ୍ରଭୁତ୍ୱର ପୂଜା—ଖାଉନ୍ଦର ପୂଜା ।

ଏଥିରେ କ'ଣ ସ୍ଥିତି ରହିବ ? ପୁରୁଣାକୁ ମନେ ପକାଇ ବସିଲେ ନୂଆ କ'ଣ ହୋଇପାରିବ ?

ହେଲେ ହେଲା ବିବେକ ମରିଯାଉ ବିବେକ ଦେହଟାକୁ ମାରିପାରିବ ନାହିଁ । ଓଲଟି ବିବେକ ଲୋପ ପାଇଗଲେ ଦେହ ବଳୁଆ ହେବ ।

ରାସ୍ତାରେ ଅନେକ ବଳବାନ୍ ଲୋକ ଯାଉଛନ୍ତି । ତାଙ୍କର ପ୍ରଧାନ ହତିଆର କୃତଘ୍ନତା । ସେଇ ଅସ୍ତ୍ର ବଳରେ ଏମାନେ ସଂସାରକୁ ଜିଣୁଛନ୍ତି । ହିଂସ୍ର ହୋଇ ଅପରକୁ ଧ୍ୱଂସ କରୁଛନ୍ତି ।

ପ୍ରଥମେ ନିଜକୁ ଧ୍ୱଂସ କରିସାରିଲା ପରେ ଅନ୍ୟକୁ ତା'ପରେ ଠାବ କରୁଛନ୍ତି । ହିଂସ୍ର ମଣିଷ ଦିନକୁ ଦିନ ନୂଆ ନୂଆ ପ୍ରକାରର ନଖ ଓ ଦାନ୍ତ ଦେଖାଇ ପଶୁ ସାଙ୍ଗରେ ଲଢେଇ କରୁଛି ।

ରାପକେଲ୍‌ର ଚାଲିଯାଉଛି ତାହାର ବିବେକକୁ ଦେଖାଇ—ପଶୁର ବି ବିବେକ ଥାଏ । ସେ ବୁଝେଇ ଦେଇ ଯାଇଛି ଯେ ସେଇ ଛୋଟିଆଘରର ପ୍ରତ୍ୟେକ ଜାଗା ଓ ପ୍ରତ୍ୟେକ ଲୋକକୁ ସେ ଭଲ ପାଉଥିଲା । ସେ ଦେଖାଇ ଦେଇ ଯାଇଛି ଯେ ମଣିଷ ପରି ସେ ତାହାର ମରଣ ବେଳା ଜାଣିପାରିଥିଲା ।

ରାପକେଲ୍‌ର ମାଆ, ଭାଇଭଉଣୀ ଦେଖାଇ ଦେଇଥିଲେ ଯେ ମଣିଷ ପରି ସେମାନେ ମଧ୍ୟ ମରଣ ବେଳେ ଉପସ୍ଥିତ ରହିପାରିଥିଲେ । ରାପକେଲ୍ ଯେ ତାହାର ମାଆକୁ ଖୋଜୁଥିଲା ଠିକ୍ ଠିକ୍ ପାଇଗଲା ତାହାର ମରଣ ଆଗରୁ ।

http://oaob.nitrkl.ac.in

ଯେତେ ଯାହା କହ ପଶୁ ତାହାର ମାଆକୁ ଖୋଜେ । ମଣିଷ ଯେତେ ଇଚ୍ଛା ସେତେ ହେଉ ନାଣ୍ଡି ମାତାମହର ସମାନ ଦେଇପାରିବ ନାହିଁ ।

ରାସକେଲ୍ ଥିଲା ପୂର୍ବ ଜନ୍ମର ସମ୍ବନ୍ଧ । କଥା ନ କହି ଇସାରାରେ ସେ କହି ଦେଇଥିଲେ ଯେ ସେ ଏଇ ଘର ପାଖରେ ରହିଥିବ । ମଝିରେ ମଝିରେ ସେ ଆସି ମନରେ ଦେଖାଦେବ । ଯାହା ତାହାର କହିବା କଥା କହିଦେଇ ଯିବ ।

କାହାରିକୁ ଘୃଣା କରି ଲାଭ ନାହିଁ । ସମସ୍ତେ ନିଜର ସ୍ଥିତିକୁ ଠିକଣା କରି ରଖିବାକୁ କେତେବେଳେ ମଣିଷ ପରି ଓ କେତେବେଳେ କୁକୁର ପରି ହେଉଛନ୍ତି ।

ମଣିଷର ଜଣାଣ ଭଜନ ଓ କୁକୁର ବୋବାଳି ଭିତରେ ଈଶ୍ୱର ସମାନ ଭାବରେ ରହିଛନ୍ତି । କୃତଜ୍ଞତା ଓ କୃତଘ୍ନତା ସେଇ ଏକା ପରଂବ୍ରହ୍ମ । ଈଶ୍ୱରଙ୍କୁ କୃତଜ୍ଞତା ଦ୍ୱାରା ପାଇହେବ ଓ କୃତଘ୍ନତାରେ ମଧ୍ୟ ପାଇବ ।

ପାପୀର ଈଶ୍ୱର ସାଧୁର ଈଶ୍ୱର ଏକା ଜିନିଷ । ପାପୀ ଈଶ୍ୱରଙ୍କୁ ପାପର ନୈବେଦ୍ୟ ଦିଏ । ସାଧୁ ଈଶ୍ୱରଙ୍କର ସାଧୁତାର ପଞ୍ଚାମୃତ ଦିଏ । ସେ ଦୁହିଁଙ୍କର ପୂଜା ସମାନ ଭାବରେ ଗ୍ରହଣ କରନ୍ତି ।

ମଣିଷ ଓ କୁକୁର ଇନ୍ଦ୍ରିୟ ସୁଖ ଖୋଜନ୍ତି । ସାଧୁ ଇନ୍ଦ୍ରିୟ ସୁଖକୁ ଶାସନ କରେ । ସହିବା ଶକ୍ତି ତାହାର ଅଧିକ । ଏଇଟା ତାହାର ସୁଯୋଗ ।

ଖୋଜିଲେ ସବୁ ମିଳେ । ସମସ୍ତେ ସବୁ ଜିନିଷ ଖୋଜନ୍ତି ନାହିଁ । ସମସ୍ତେ ମନ ଅନୁସାରେ ପାଆନ୍ତି ।

ରାସକେଲ୍ ଦେଖାଇ ଦେଇଯାଇଥିଲା ଯେ କୁକୁର ଛୁଆ ଜୀବନରେ ମଧ୍ୟ ତାହାର ଖୋଜା ଲୋଡ଼ା ଅନୁସାରେ କ'ଣ ନ ମିଳିଛି ତାକୁ ?

ପୁଣ୍ୟାତ୍ମା ଅଧିକ କ'ଣ ପାଇଥାନ୍ତା ?

ରାସକେଲ୍ କ'ଣ ସତରେ ମରିଛି ।

ସମସ୍ତେ ଦେଖିବାକୁ ରାସକେଲ୍‌ର ପ୍ରାଣବାୟୁ ଉଡ଼ିଗଲା । ସେ ମୁହଁ ମୋଡ଼ି ଦେଲା । ତାହାର ଦେହକୁ ଫୋପାଡ଼ି ଦିଆହେଲା ।

କିନ୍ତୁ ରାସକେଲ୍ ଆସିଥିଲା ଯେମିତି ରହିଗଲା ଠିକ୍ ସେମିତି । ଏଇ ବିଶ୍ୱରେ ଯାହାର ଯେଉଁ ସ୍ଥିତି, ଆଉ ଯେଉଁ କାମ, ଭାବ ଓ ଭାବନା ସବୁ ଫଟୋ ପରି ରହିଛି । ଆକାଶରେ ମେଘ ପରି ତାଙ୍କି ରଖିଛି ଏଇ ଜୀଅନ୍ତା ପୃଥିବୀକୁ । ସମସ୍ତଙ୍କର ଆତ୍ମାକୁ ଦେଖାଇ ଶିଖାଇ ସଜାଡ଼ୁଛି ।

http://oaob.nitrkl.ac.in

କୁକୁର ଛୁଆ ମଣିଷର ଭାଇ । ସେ ମଣିଷ ସାଙ୍ଗରେ ସମାନ । ମୁଖ୍ୟ ମନ୍ତ୍ରୀ, ମୁଖ୍ୟ ବିଚାରପତି, ମୁଖ୍ୟ ରାସକେଲ୍ ସମସ୍ତେ ଭଗବାନଙ୍କର ପରପ୍ରକାଶ । ମଣିଷ ଯଦି କୃତଘ୍ନ ତାହାହେଲେ ସେଇ ଭଗବାନ ମଧ୍ୟ ସେଇ ଦୋଷରେ ଦୋଷୀ ।

ରାସକେଲ୍ ମଲା ପରେ ବି ତାଙ୍କୁ କହିପାରିବ—ଏଇ ସଂସାରରେ ସତ୍ ଓ ଅସତ୍ ବୋଲି କିଛି କଥା ନାହିଁ । ମନର ବଳ ପାଇଁ ଧନ୍ଦେ ଦରକାର ।

ସେଦିନ ରାତିରେ ସେ ଖେଇ ବନ୍ଦ ଥିଲା—ରାସକେଲ୍ର ସ୍ମୃତି ଉଦ୍ଦେଶ୍ୟରେ ।

ନ ଖାଇଲେ କ'ଣ ରାସକେଲ୍ ଫେରିବ ? ନ ଖାଇଲେ କ'ଣ ରାସକେଲ୍ ମରିଯିବ ? ଦିନକ ପାଇଁ ଥରକ ପାଇଁ ଆମର ସ୍ନେହ ଶ୍ରଦ୍ଧାର ମୂଲ କଲେ କ'ଣ ପୃଥିବୀ ଅଚଳ ହୋଇଯିବ ?

ରାସକେଲ୍ ଚିରଦିନକୁ ତାକୁ ଜାଣିଥିବା ଲୋକଙ୍କ ପାଖରେ ଅଭୁଲା ହୋଇ ରହିଯିବ । କାରଣ ସେ ଦେବ ଅଂଶରେ ଆସିଥିଲା ।



http://oaob.nitrkl.ac.in